*Approved by the T. B. Committee, Bihar and Orissa Notification No. 4831 dated the 14th May 1935 published in Orissa Gazette dated 20-11-36.*

# SARAL BHARAT ITIHAS

For

*Classes IV & V*

BY

GODAVARIS MAHAPATRA

&

BAMAN CHARAN DAS

Published by

**Gopinath Jena**

THE ORISSA PUBLISHING HOUSE

Balubazar, Cuttack.

*2nd Edition.*

1937

*Price—Annas Eight only.*

Digitized by srujanika@gmail.com

# ସୂଚୀ

## ପ୍ରଥମ ଭାଗ



Digitized by srujanika@gmail.com

Digitized by srujanika@gmail.com

Digitized by srujanika@gmail.com

# ଦ୍ୱିତୀୟ ଭାଗ



Digitized by srujanika@gmail.com

| ବିଷୟ | ପୃଷ୍ଠା |
|---|---|


Digitized by srujanika@gmail.com

| ବିଷୟ | ପୃଷ୍ଠା |
|---|---|





Digitized by srujanika@gmail.com

# ସରଳ ଭାରତ ଇତିହାସ

## [ ପ୍ରଥମ ଭାଗ ]

### ଇତିହାସ କଣ ଓ କାହିଁକି ପଢ଼ିବା ?

ଆମ ବାପା, ଭାଇ, ବନ୍ଧୁବାନ୍ଧବ କେହି ବିଦେଶ କଡ଼ ଗଲେ ମଝିରେ ମଝିରେ ଚିଠିପତ୍ରଦ୍ୱାରା ତାଙ୍କ ହାଲଚାଲ ଆମକୁ ଜଣାନ୍ତି । ଆମେ ମଧ୍ୟ ଏହିପରି ତାଙ୍କୁ ଖବର ଦେଉଁ । ଚିଠିପତ୍ର ଦିଆନିଆ ହେଉ ନ ଥିଲେ ଆମେ କେହି କାହା କଥା ଜାଣିପାରନ୍ତେ ନାହିଁ । ସେହିପରି ଆମ ଏ ଦେଶରେ ଅତି ପୂର୍ବକାଳରେ କିଏ ବାସ କରୁଥିଲେ, କେଉଁ ରାଜା କିପରି ଦେଶ ପାଳୁଥିଲେ, ତାହା ପରେ କିଏ ରାଜା ହେଲେ, ତାହା ସଙ୍ଗେ ତାହାର କିପରି କେଉଁଠି ଲଢ଼େଇ ହେଲା, କିଏ ସବୁ ସୁନ୍ଦର ସୁନ୍ଦର ଦେଉଳ, ପୋଖରୀ, ଗଡ଼, ପାଚେରି, କୋଠାବାଡ଼ି, ନଗର ତୋଳିଥିଲେ, ଆମ ପୂର୍ବପୁରୁଷମାନେ ସୁଖରେ ଥିଲେ କି ଦୁଃଖରେ ଥିଲେ, ଏ ସବୁର ଠିକ୍ ସତ୍ୟ କଥା କେହି ଲେଖି ରଖି ନ ଥିଲେ କେହି କିଛି ଜାଣନ୍ତେ ନାହିଁ । ଇତିହାସରେ ଏ ସବୁ କଥା ଲେଖା ଥାଏ । ତାହା ପଢ଼ିଲେ ଆମେ ଏବେ ଭଲରେ ଅଛୁ, ନା ସେକାଳର ଲୋକେ ଭଲରେ ଥିଲେ, ଜଣାପଡ଼େ । ଦେଶର କୃଷି, ବାଣିଜ୍ୟ, ଶିଳ୍ପ, ଶିକ୍ଷା ସକଳ ବିଷୟର ନାନା ଖବର ଇତିହାସରେ ଆମ୍ଭେମାନେ ପଢ଼ିବାକୁ ପାଉଁ । ଏହା ଦ୍ୱାରା ଆମ ଦେଶ ସଙ୍ଗେ ଅନ୍ୟ ଦେଶକୁ ତୁଳନା କରି ନାନା କଥା ଜାଣୁ ।

---

Digitized by srujanika@gmail.com

# ଭାରତବର୍ଷ

ଆମ ଦେଶର ନାଁ ଭାରତବର୍ଷ । ଏ କଥା ବୋଧହୁଏ ସମସ୍ତେ ଜାଣିଥିବ । କିନ୍ତୁ ଏ ନାଁ କିପରି ହୋଇଲା ଜାଣିଛ ?

ଅତି ପୂର୍ବକାଳରେ ଏ ଦେଶରେ ଦୁଷ୍ମନ୍ତ ବୋଲି ଜଣେ ନାମଜାଦା ରାଜା ଥିଲେ । ତାଙ୍କ ପୁଅଙ୍କ ନାଁ ଭରତ । ଭରତଙ୍କର ଏତେ ବଳ ଥିଲା ଯେ, ସେ ପିଲାଦିନେ ମଧ୍ୟ ବଣର ବାଘକୁ ଧରିଆଣି ତା ପିଠିରେ ଘୋଡା ଚଢି ପାରୁଥିଲେ । ସେହି ଭରତଙ୍କ ନାଁ ଅନୁସାରେ ଆମ ଏ ଦେଶର ନାଁ ଭାରତବର୍ଷ ହୋଇଅଛି ।

ଭାରତବର୍ଷ ଦେଖିବାକୁ ତିନିକୋଣିଆ । ଦୁଇ ପଟେ ସମୁଦ୍ର ଘେରି ରହିଛି । ପୂର୍ବରେ ବଙ୍ଗୋପସାଗର ଓ ପଶ୍ଚିମରେ ଆରବ ସାଗର । ଉତ୍ତର ଦିଗରେ ମସ୍ତବଡ ପାଚେରି ପରି ହିମାଳୟ ପର୍ବତ ଠିଆ ହୋଇ ରହିଛି । ଏହାଠାରୁ ବଳି ପୃଥିବୀରେ ଆଉ ଉଚ୍ଚ ପର୍ବତ ନାହିଁ । ଆହୁରି ମଧ୍ୟ ଉତ୍ତର-ପୂର୍ବ ଓ ଉତ୍ତର-ପଶ୍ଚିମ ପଟରେ ହିମାଳୟର ଦୁଇ ବାହା ପରି ଅନେକ ଶାଖା-ପ୍ରଶାଖା ପର୍ବତ ବାହାରି ସମୁଦ୍ର କୂଳ ପର୍ଯ୍ୟନ୍ତ ଲାଗିଛି । ହିମାଳୟ ପରି ପର୍ବତକୁ କାହାରି ପାରି ହେବା ସମ୍ଭବ ନୁହେଁ ।

ଭାରତବର୍ଷର ପୂର୍ବ, ଦକ୍ଷିଣ ଓ ପଶ୍ଚିମ ଦିଗରେ ଜଳ ପୂରି ରହିଛି । ଜାହାଜରେ ନ ଆସିଲେ ଅନ୍ୟ ଉପାୟରେ ସେ ବାଟେ ଏ ଦେଶକୁ କାହାରି ଆସିବା ଅସମ୍ଭବ । କିନ୍ତୁ ଉତ୍ତର-ପୂର୍ବ ଓ ଉତ୍ତର-ପଶ୍ଚିମ କୋଣରେ ପର୍ବତ ସବୁ ହିମାଳୟ ପରି ଉଚ୍ଚ ନୁହେଁ । ସେ ସବୁ ପର୍ବତର ମଝିରେ ମଝିରେ ଏପରି ସବୁ ରାସ୍ତା ଅଛି ଯେ, ସେ ବାଟେ ଯିବା ଆସିବା କରିହୁଏ । ଏହି ବାଟକୁ ଗିରିପଥ କହନ୍ତି । ଏହି ଗିରିପଥ ବାଟେ ଅନେକ ସମୟରେ ଅନେକ ଜାତିର ଲୋକ ଏ ଦେଶକୁ ଆସିଛନ୍ତି ।

ଭାରତରେ ଅସଂଖ୍ୟ ପର୍ବତ । ଉତ୍ତରରେ ହିମାଳୟ, ମଝିରେ ବିନ୍ଧ୍ୟ । ବିନ୍ଧ୍ୟର କଚ୍ଛ ଦକ୍ଷିଣକୁ ସାତପୁରା । ତାର ଟିକିଏ ଉପରକୁ ଆରାବଳୀ । ଆହୁରି ଦକ୍ଷିଣକୁ ପୂର୍ବଧାରରେ ସମୁଦ୍ରକୁ ଲାଗି ପୂର୍ବଘାଟ ପର୍ବତ ଓ ପଶ୍ଚିମ

Digitized by srujanika@gmail.com

ଧାରରେ ପଶ୍ଚିମଘାଟ ପର୍ବତମାଳା ଅଛି । ଏହା ଛଡ଼ା ଆହୁରି ଛୋଟ ବଡ଼ ଅନେକ ପର୍ବତ ଅଛି ।

ତେଣୁ ଭାରତକୁ ପ୍ରାକୃତିକ ଭାବରେ ମୋଟାମୋଟି ତିନିଗୋଟି ଭାଗରେ ବିଭକ୍ତ କରାଯାଇପାରେ । ପ୍ରଥମ--ହିମାଳୟ ଅଞ୍ଚଳ, ଦ୍ୱିତୀୟ--ହିମାଳୟଠାରୁ ବିନ୍ଧ୍ୟପର୍ବତ ପର୍ଯ୍ୟନ୍ତ ଥିବା ସମତଳ ଭୂମି । ଏହାର ନାମ ଆର୍ଯ୍ୟାବର୍ତ୍ତ । ବିନ୍ଧ୍ୟ ପର୍ବତର ଦକ୍ଷିଣକୁ ଯେଉଁ ଅଞ୍ଚଳ, ତାହାର ନାମ ଦାକ୍ଷିଣାତ୍ୟ ।

ଭାରତବର୍ଷରେ ଅସଂଖ୍ୟ ନଦୀ । ହିମାଳୟରେ ବର୍ଷତମାମ୍ ବରଫ ପଡ଼େ । ହିମାଳୟ ଅର୍ଥ ବରଫର ଘର । ଖରାଦିନେ ସେହି ବରଫ ତରଳିଲେ ନଦୀମାନଙ୍କରେ ବଢ଼ି ହୁଏ । ବର୍ଷାଦିନେ ପର୍ବତ ଉପରେ ପ୍ରଚୁର ବର୍ଷା ହୁଏ । ନଈନାଳ ପୂରି କୂଳ ଉଛୁଳି ଗାଁଗଣ୍ଡା ଭାସିଯାଏ । ଗଙ୍ଗା, ଯମୁନା, ବ୍ରହ୍ମପୁତ୍ର ଓ ସିନ୍ଧୁନଦୀ ସବୁ ହିମାଳୟରୁ ବାହାରି, ଶାଖାପ୍ରଶାଖା ଧରି ସମୁଦାୟ ଆର୍ଯ୍ୟାବର୍ତ୍ତକୁ ପାଣି ଯୋଗାନ୍ତି । ଏହିସବୁ ନଈଦ୍ୱାରା ଆର୍ଯ୍ୟାବର୍ତ୍ତ 'ସୁନାର ଭୂଇଁ' ହୋଇ ରହିଛି । ବିନ୍ଧ୍ୟ ପର୍ବତର ପାଣିକୁ ମହାନଦୀ ଓ ନର୍ମଦା ପ୍ରଭୃତି ନଦୀ ସମୁଦ୍ରକୁ ବହି ନେଉଛନ୍ତି । ସାତପୁରା ପର୍ବତରୁ ତାପ୍ତୀ ନଦୀ ବାହାରି ଆରବ ସାଗରରେ ପଡ଼ିଛି । କୃଷ୍ଣା, କାବେରୀ ଓ ଗୋଦାବରୀ ନଦୀମାନେ ପଶ୍ଚିମଘାଟ ନିକଟରୁ ବାହାରି ପୂର୍ବଘାଟ ପଟେ ବଙ୍ଗୋପସାଗରରେ ମିଶିଛନ୍ତି ।

ମୋଟାମୋଟି ଭାରତବର୍ଷକୁ ଗୋଟିଏ ଛୋଟ ପୃଥିବୀ କହିଲେ ଚଳେ । ପୃଥିବୀରେ ଏଭଳି କିଛି ଜିନିଷ ନାହିଁ, ଯାହା କି ଭାରତବର୍ଷରେ ନ ମିଳେ । ଏଠାରେ କେଉଁଠି ଅତି ଉଚ୍ଚ ଭୂମି ଅଛି, କେଉଁଠି ଅତି ଖାଲ ଭୂମି ମଧ୍ୟ ଅଛି । କେଉଁଠି ସୁନ୍ଦର ଶସ୍ୟକ୍ଷେତ୍ର ଓ କେଉଁଠି ବିକଟ ମରୁଭୂମି ଦେଖାଯାଏ । ସୁନା, ରୁପା, ତମ୍ବା, ଲୁହା, ହୀରା--ସବୁ ଧାତୁର ଖଣି ଏଠାରେ ଅଛି । ପ୍ରତ୍ୟେକ ପ୍ରକାରର ଗଛ, ପଶୁ, ପକ୍ଷୀ, କୀଟ, ପତଙ୍ଗ ଏ ଦେଶରେ ଦେଖାଯାନ୍ତି । ଭାରତରେ ନାନାପ୍ରକାର ଲୋକଙ୍କ ବସତି ଦେଖାଯାଏ । କେଉଁଠି ନିତାନ୍ତ ବଣୁଆ ଲୋକେ ଅଛନ୍ତି । ସେମାନେ ଦେଖିବାକୁ ନିତାନ୍ତ

Digitized by srujanika@gmail.com

ଅସୁନ୍ଦର । ଆଉ କେଉଁଠି ସୁନ୍ଦର, ଗୌରବର୍ଣ୍ଣର ଲୋକେ ଅଛନ୍ତି । ସେମାନଙ୍କର ଆଚାର ବ୍ୟବହାର ଓ ଚାଲିଚଳଣ ବଣୁଆଙ୍କଠାରୁ ଭିନ୍ନ ।

ଏହିସବୁ ଲୋକେ କିପରି, କାହିଁକି ଓ କେତେବେଳେ ଏ ଦେଶକୁ ଆସିଥିଲେ, ଆର ଅଧ୍ୟାୟରେ କୁହାଯିବ ।

---

# ଅନାର୍ଯ୍ୟ ଜାତି

ଆଜିକି ବହୁ ହଜାର ବର୍ଷ ତଳେ ଆମ ଏ ଦେଶ କେବଳ ବଣ ଜଙ୍ଗଲରେ ପୂର୍ଣ୍ଣ ରହିଥିଲା । ବାଘ, ଭାଲୁ, ଗଣ୍ଡା, ହାତୀ, ହରିଣ, ସମ୍ବର ପ୍ରଭୃତି ବଣୁଆ ପଶୁ ଅବାଧରେ ଚାରିଆଡ଼େ ବୁଲୁଥିଲେ । ସେତେବେଳେ ଆମ ପୂର୍ବପୁରୁଷ ଲୋକେ ଏ ଦେଶକୁ ଆସି ନ ଥିଲେ । ଠାଆ ଠାଆ ହୋଇ କେତେଗୁଡ଼ିଏ ବଣୁଆ ମଣିଷ ଏଠାରେ ବାସ କରୁଥିଲେ । ସେମାନେ ଆଜିକାଲି କନ୍ଧ, କୋହ୍ଲ, ଭୂୟାଁ, ସାନ୍ତାଳଙ୍କ ପରି ଥିଲେ । ସେହି ସମୟରେ ସେମାନଙ୍କ ପୂର୍ବପୁରୁଷ ଲୋକେ ଲଙ୍ଗଳା ହୋଇ ବଣଜଙ୍ଗଲରେ ବୁଲୁଥିଲେ । କଞ୍ଚା ଫଳମୂଳ, କଞ୍ଚା ମାଛମାଂସ ଖାଇ ବଞ୍ଚୁଥିଲେ । ଆଜିକାଲି ଯେଉଁ ପାଣ, ବାଉରୀ, କଣ୍ଡରା ଜାତିର ଲୋକ ଦେଖାଯାନ୍ତି, ଏମାନେ ସେହି ଶ୍ରେଣୀର । ଆଜିକାଲି କେତେକେ ସଭ୍ୟ ହୋଇଗଲେଣି । ଏମାନେ କେଉଁଠୁ କିପରି ଏ ଦେଶକୁ ଆସିଥିଲେ, ଜଣା ନାହିଁ । ଏହି ଲୋକଙ୍କୁ ଅନାର୍ଯ୍ୟ କହନ୍ତି । ହଜାର ହଜାର ବର୍ଷ ତଳେ ଏମାନଙ୍କ ପୂର୍ବପୁରୁଷମାନେ ପର୍ବତ-ଗୁମ୍ଫା ଓ ଗଛ-କୋରଡ଼ରେ ରହୁଥିଲେ । ଗଡ଼ଜାତର ପାହାଡ଼ିଆ ଅଞ୍ଚଳରେ ଏବେ ଏହି ଜାତିର ଲୋକେ ଦେଖାଯାନ୍ତି । କେହି କେହି କହନ୍ତି, ଏହି ଅନାର୍ଯ୍ୟମାନେ ଚୀନ ଓ ମଙ୍ଗୋଲିଆ ଦେଶରୁ ହିମାଳୟର ପୂର୍ବ ଗିରିପଥ ବାଟେ ଏ ଦେଶକୁ ଆସିଥିଲେ । ଏମାନେ ଦେଖିବାକୁ ନିତାନ୍ତ ଅସୁନ୍ଦର ଓ କାଳିଆ । ଏମାନଙ୍କ ପରେ ଆଉ ଦଳେ ଲୋକ ମଧ୍ୟ-ଏସିଆରୁ ହିମାଳୟର ପଶ୍ଚିମ ଗିରିପଥ ବାଟେ ଏ ଦେଶକୁ ଆସି ପଞ୍ଜାବରେ ବାସ କରୁଥିଲେ । ଏମାନେ ପୂର୍ବ ଅନାର୍ଯ୍ୟଙ୍କଠାରୁ ଟିକିଏ ସୁନ୍ଦର ।

Digitized by srujanika@gmail.com

ଦାକ୍ଷିଣାତ୍ୟରେ ଆଜିକାଲି ଯେଉଁ ତେଲଙ୍ଗୁ, ତାମିଲ୍, କାନାରୀ ଜାତିର ଲୋକେ ବାସ କରୁଛନ୍ତି, ସେମାନଙ୍କ ପୂର୍ବପୁରୁଷ ଅନାର୍ଯ୍ୟମାନଙ୍କ ପରେ ମଧ୍ୟ-ଏସିଆରୁ ଆସିଥିଲେ । ସେମାନେ ଅନାର୍ଯ୍ୟମାନଙ୍କଠାରୁ ଅନେକ ଗୁଣରେ ସଭ୍ୟ ଥିଲେ ।

କେହି କେହି କହନ୍ତି, ଆଗେ ଭାରତବର୍ଷ ବୁଲି ଅଷ୍ଟ୍ରେଲିଆ, ମାଲୟ ଦ୍ୱୀପପୁଞ୍ଜ ପର୍ଯ୍ୟନ୍ତ ଲମ୍ବିଥିଲା । କାଳକ୍ରମେ ଭୂଇଁ ଦବିଯାଇ ପାଣି ମାଡିଯିବାରୁ ସେଠା ଲୋକେ ଦାକ୍ଷିଣାତ୍ୟକୁ ଚାଲିଆସିଛନ୍ତି । ଏହି ଜାତିର ଲୋକଙ୍କୁ ଦ୍ରାବିଡ ବୋଲି କହନ୍ତି । ଦ୍ରାବିଡ ଶବ୍ଦର ଅର୍ଥ ଦାକ୍ଷିଣାତ୍ୟ ।

---

## ଆର୍ଯ୍ୟ ଜାତି

ଆମ ଦେଶର ଉଚ୍ଚବଂଶର ଲୋକେ ପ୍ରଥମେ ମଧ୍ୟ-ଏସିଆରେ ବାସ କରୁଥିଲେ । ସେମାନଙ୍କ କୁଟୁମ୍ବ ବଢିବାରୁ ସେମାନଙ୍କ ଭିତରୁ ଦଳେ ଜୀବିକା ଅର୍ଜିବା ପାଇଁ ଇଉରୋପ ଆଡେ ବାହାରିଗଲେ, ଦଳେ ଆରବ ଓ ପାରସ୍ୟ ରାଜ୍ୟ ଆଡେ ଗଲେ, ଆଉ ଦଳେ ଭାରତକୁ ଆସିଲେ । ସେମାନେ ଭିନ୍ନ ଭିନ୍ନ ଦେଶରେ ରହିବାରୁ ସେହି ସେହି ଦେଶର ଜଳବାୟୁରେ ସେମାନଙ୍କର ଆକୃତି ବ୍ୟବହାର ବଦଳିଗଲା । ସେମାନେ ଆପଣା ଆପଣାକୁ ଅଲଗା ଅଲଗା ଜାତିର ଲୋକ ବୋଲି ମନେ କଲେ । ନ ହେଲେ, ଇଉରୋପ, ଆରବ, ପାରସ୍ୟ ଓ ଭାରତର ଏହି ଲୋକମାନେ ଦିନେ ଏକ ଜାତିର ଲୋକ ଥିଲେ । ଏହି ସମସ୍ତଙ୍କୁ ଆର୍ଯ୍ୟ କହନ୍ତି ।

କୌଣସି କୌଣସି ପଣ୍ଡିତଙ୍କ ମତରେ ଆର୍ଯ୍ୟମାନେ ପ୍ରଥମେ ପୃଥିବୀର ଅତି ଉତ୍ତର ଅଞ୍ଚଳରେ ବାସ କରୁଥିଲେ । କାଳକ୍ରମେ ସେଠାରେ ଖୁବ୍ ବରଫ ପଡିଲା । ମନୁଷ୍ୟର ଘର କରି ରହିବା ସେଠି ଅସମ୍ଭବ ହେଲା । ତହୁଁ ଲୋକେ ଦକ୍ଷିଣ ଆଡକୁ ଆସ୍ତେ ଆସ୍ତେ ଚାଲି ଆସିଲେ ।

ଆର୍ଯ୍ୟମାନେ ପ୍ରଥମେ ଆସି ପଞ୍ଜାବରେ ରହିଲେ । ସେମାନେ ଭଲ ଭଲ ସ୍ଥାନ ଦଖଲ କରି ଅନାର୍ଯ୍ୟମାନଙ୍କୁ ତଡିବାକୁ ଲାଗିଲେ । ଏହି ଦୁଇ

Digitized by srujanika@gmail.com

ଦଳ ମଧ୍ୟରେ ମଝିରେ ମଝିରେ ଲଢେଇ ହେଲା । କେତେକ ଅନାର୍ଯ୍ୟ ଯୁଦ୍ଧରେ ହାରି ପାହାଡ ଜଙ୍ଗଲରେ ଲୁଚି ଆଶ୍ରୟ ନେଲେ । ଅଉ କେତେକ ତଡା ଖାଇ ଦାକ୍ଷିଣାତ୍ୟ ଆଡକୁ ବାହାରିଗଲେ । କାଳକ୍ରମେ ଆର୍ଯ୍ୟମାନେ ସମୁଦାୟ ଉତ୍ତର-ଭାରତ ଅଧିକାର କରି ବସିଲେ । ତେଣୁ ଉତ୍ତର-ଭାରତର ନାଁ ହେଲା ଆର୍ଯ୍ୟାବର୍ତ୍ତ ।

ଆର୍ଯ୍ୟମାନେ ବଡ ସଭ୍ୟ ଥିଲେ । ସେମାନେ ଘରଦ୍ୱାର ତୋଳି ରହୁଥିଲେ, ଜମି ଚାଷ କରୁଥିଲେ । ଗୋରୁ ସେମାନଙ୍କର ପ୍ରଧାନ ଧନ ଥିଲା । ସେମାନେ ସୋମ ନାମରେ ଏକ ପ୍ରକାର ଲତାର ରସକୁ ଠାକୁରଙ୍କୁ ଭୋଗ କରି ଖାଉଥିଲେ । ଯେଉଁ ଜିନିଷ ସୁନ୍ଦର ଦିଶୁଥିଲା ଏବଂ ଯାହାଠାରୁ କିଛି ନା କିଛି ଉପକାର ମିଳୁଥିଲା, ସେମାନେ ଭକ୍ତିରେ ତାକୁ ପୂଜୁଥିଲେ । ସୂର୍ଯ୍ୟ, ଅଗ୍ନି, ପବନ, ଇନ୍ଦ୍ର, ବରୁଣଙ୍କୁ ଦେବତା ବୋଲି ବିଶ୍ୱାସ କରୁଥିଲେ । ସେମାନେ ଆହୁରି ବିଶ୍ୱାସ କରୁଥିଲେ ଯେ, ଲୋକ ମରିଯିବା ପରେ ତାର ଆତ୍ମା ସ୍ୱର୍ଗକୁ ଯାଏ । ସେହି ସ୍ୱର୍ଗରେ କେହି ଦୁଃଖ ପାନ୍ତି ନାହିଁ । କେହି ମରିଗଲେ ତାର ବଂଶର ଲୋକେ ହୋମ ବା ଯଜ୍ଞ କରୁଥିଲେ ।

ଆର୍ଯ୍ୟମାନେ ଦେଖିବାକୁ ଉଜ୍ଜ୍ୱଳ, ବଳିଷ୍ଠ ଓ ସାହସୀ । ଯେଉଁ ଦଳ ଶୀତପ୍ରଧାନ ଦେଶରେ ରହିଲେ, ସେମାନେ ଗୌରବର୍ଣ୍ଣ ଓ ବଳବାନ ହେଲେ । ଯେଉଁମାନେ ଗ୍ରୀଷ୍ମପ୍ରଧାନ ଦେଶରେ ରହିଲେ, ସେମାନଙ୍କ ଶରୀରର ତେଜ ଖରାତାପରେ କମିଗଲା । ମାତ୍ର ଇଂରେଜ, ଜର୍ମାନ, ମୁସଲମାନ୍, ହିନ୍ଦୁ—ସମସ୍ତେ ଏହି ଆର୍ଯ୍ୟଜାତିର ଲୋକ ଅଟନ୍ତି ।

---

## ହିନ୍ଦୁ ଜାତି

ଯେଉଁ ଆର୍ଯ୍ୟମାନେ ଭାରତରେ ଆସି ପହଞ୍ଚିଲେ, ସେମାନେ ପ୍ରଥମେ ସିନ୍ଧୁନଦୀ ଓ ତାର ଉପନଦୀମାନଙ୍କ କୂଳରେ ବାସ କଲେ । ପାରସ୍ୟ ଦେଶର ଲୋକେ ସେତେବେଳେ ସିନ୍ଧୁ ନଦୀକୁ ହିନ୍ଦୁ ବୋଲି କହୁଥିଲେ । ସେହି ହେତୁରୁ ସିନ୍ଧୁ ନଦୀତୀରବାସୀ ଆର୍ଯ୍ୟମାନଙ୍କ ନାଁ ହେଲା ହିନ୍ଦୁ । କାଳକ୍ରମେ

Digitized by srujanika@gmail.com

ଏହି ନାଁରୁ ଉତ୍ତର-ଭାରତର ଆଉ ଗୋଟିଏ ନାଁ ହେଲା ହିନ୍ଦୁସ୍ଥାନ । ଏବେ ହିନ୍ଦୁସ୍ଥାନ କହିଲେ ସମଗ୍ର ଭାରତକୁ ମଧ୍ୟ ବୁଝାଉଛି । ପରେ ଇଂରେଜମାନେ ସିନ୍ଧୁ ନଦୀକୁ ଇଣ୍ଡସ୍ ବୋଲି ଡାକିଲେ । ସେହି ଅନୁସାରେ ସେମାନେ ଭାରତବର୍ଷକୁ ଇଣ୍ଡିଆ ନାଁ ଦେଲେ ।

---

# ବେଦ

ଆର୍ଯ୍ୟମାନେ କେବେ ଲେଖିପଢ଼ି ଶିଖିଲେ, ସେ ବିଷୟରେ ଏ ପର୍ଯ୍ୟନ୍ତ କୌଣସି ଇତିହାସ ମିଳି ନାହିଁ । କିନ୍ତୁ ସେମାନେ ଦେବତା ପୂଜିଲା ବେଳେ ସ୍ତୋତ୍ର ପଢ଼ୁଥିଲେ । ସେହି ସ୍ତୋତ୍ରକୁ ସେମାନେ କେବଳ ମନେ ରଖୁଥିଲେ ଓ ମରିବା ପୂର୍ବରୁ ପୁଅନାତିଙ୍କୁ ଶିଖାଇ ଦେଇ ଯାଉଥିଲେ । ହିନ୍ଦୁମାନେ ଏହିପରି ଅନେକ ବର୍ଷ ପର୍ଯ୍ୟନ୍ତ ଅନେକ ସ୍ତୋତ୍ର ମୁଖସ୍ଥ କରୁଥିଲେ । କେବେ ପୁଣି ଲେଖିବା ରୀତି ବାହାର କଲେ । ସେତେବେଳେ ଆଜି-କାଲି ପରି କାଗଜ ନ ଥିଲା । ତେଣୁ ସୁବିଧା ପାଇଁ ସେହି ଉପାସନା ସ୍ତୋତ୍ର ସବୁ ସେମାନେ ତାଳପତ୍ର ପୋଥିମାନଙ୍କରେ ଲେଖି ରଖିଲେ । ସେଥିରେ ବହୁତ ଶିଖିବାର କଥା ଅଛି । ସେହି ସବୁର ନାଁ ପରେ ବେଦ ବୋଲି ଦିଆଗଲା । ବେଦର ଅର୍ଥ 'ଜ୍ଞାନ' । ଏହି ବେଦ ଚାରି ଖଣ୍ଡରେ ବିଭକ୍ତ—ଋକ୍, ସାମ, ଯଜୁଃ ଓ ଅଥର୍ବ । ଋକ୍ ବେଦ ସବୁଠାରୁ ପୁରୁଣା । ଏହା ଆର୍ଯ୍ୟମାନଙ୍କର ପ୍ରଧାନ ଧର୍ମଶାସ୍ତ୍ର । କିପରି ହୋମ ଯଜ୍ଞ କରିବାକୁ ହେବ, କେଉଁ ଦେବତାଙ୍କୁ କିପରି ପୂଜିବ, ଏଥିରେ ଲେଖାଅଛି । ହିନ୍ଦୁମାନେ ବିଶ୍ୱାସ କରନ୍ତି, ବେଦକୁ ମଣିଷ ଲେଖି ନାହିଁ; ବ୍ରହ୍ମା ଏହାକୁ ଆର୍ଯ୍ୟ ଋଷିମାନଙ୍କ ହାତରେ ଦେଇଯାଇଛନ୍ତି । ପୃଥିବୀର ଆଉ କୌଣସି ଜାତିରେ ଏତେ ପୁରାତନ ଧର୍ମଗ୍ରନ୍ଥ ନାହିଁ । ଏଥିରୁ ସେ ଯୁଗର ଆର୍ଯ୍ୟମାନଙ୍କ ବିଷୟରେ ବହୁତ କଥା ଜଣାଯାଏ ।

ଆର୍ଯ୍ୟମାନେ ଯେତେବେଳେ ଅନାର୍ଯ୍ୟମାନଙ୍କୁ ଉତ୍ତର-ଭାରତରୁ ତଡ଼ିଲେ, ସେ ସମୟରେ ସେମାନେ ଅନାର୍ଯ୍ୟମାନଙ୍କୁ ଦସ୍ୟୁ ବୋଲି ଡାକୁ-ଥିଲେ । ସେତେବେଳେ ମଧ୍ୟ ଆର୍ଯ୍ୟମାନଙ୍କର କାହାରି ଥିଲା । ସେତେବେଳେ

Digitized by srujanika@gmail.com

ପଞ୍ଜାବର କେତେକ ଅଞ୍ଚଳରେ ଜଣେ ବିଖ୍ୟାତ ରାଜା ଥିଲେ । ତାଙ୍କ ନାଁ ସୁଦାସ । ତାଙ୍କର ବହୁତ ଜାହାଜ ବା ବଡ ବଡ ନୌକା ଥିଲା । ତାଙ୍କ କଥା ଋକ୍ ବେଦରେ ଲେଖାଅଛି ।

ବେଦରେ ଲେଖାଅଛି, ଉତ୍ତର-ଭାରତ ଅନେକଗୁଡ଼ିଏ ଛୋଟ ଛୋଟ ରାଜ୍ୟରେ ବିଭକ୍ତ ହୋଇଥିଲା । ଏକ ଏକ ରାଜା ଏକ ଏକ ରାଜ୍ୟରେ ରାଜୁତି କରୁଥିଲେ । ମନ୍ତ୍ରୀମାନେ ରାଜକାର୍ଯ୍ୟରେ ସାହାଯ୍ୟ କରୁଥିଲେ । ପ୍ରଜାମାନେ ଉପଯୁକ୍ତ ଲୋକକୁ ଆପଣା ଭିତରୁ ବାଛି ରାଜା କରି ରାଜଗାଦିରେ ବସାଉଥିଲେ । ସେ ରାଜା ଅନ୍ୟାୟ କଲେ ବା ପ୍ରଜାମାନଙ୍କୁ ଭଲ ନ ପାଳିଲେ ତାଙ୍କୁ ତଡିଦେଇ ଅନ୍ୟ ଲୋକକୁ ରାଜା କରାଉଥିଲେ । ପ୍ରଥମେ ରାଜା ହେବା ବଂଶଗତ ନ ଥିଲା । କ୍ରମେ ରାଜାମାନେ ଆପଣା କ୍ଷମତା ବଢାଇ ନିଜ ବଂଶର ଲୋକଙ୍କୁ ଉତ୍ତରାଧିକାରୀ କରାଇନେଲେ ।

ସେ ସମୟରେ ଯୁଦ୍ଧରେ ହାତୀ, ଘୋଡା, ରଥ ବ୍ୟବହାର ହେଉଥିଲା । ଯୋଦ୍ଧାମାନେ ସାଞ୍ଜୁ ପିନ୍ଧି, ଧନୁ ଧରି, କାଣ୍ଡ ବିନ୍ଧି ଯୁଦ୍ଧ କରୁଥିଲେ ।

---

## ଜାତି ବିଭାଗ

ଆର୍ଯ୍ୟମାନଙ୍କ ଲୋକସଂଖ୍ୟା ବଢିଯିବାରୁ ସେମାନେ ଗଙ୍ଗା ଓ ଯମୁନା କୂଳରେ ଥିବା ଅନାର୍ଯ୍ୟ ବା ଦସ୍ୟୁମାନଙ୍କୁ ତଡି ଭଲ ଭଲ ଉର୍ବର ଭୂଇଁ ଅଧିକାର କଲେ । ଦୁଇ ଦଳ ଭିତରେ ଲଢେଇ ଚାଲିଲା । ଲଢେଇ ସବୁବେଳେ ଚାଲିବାରୁ ଅନ୍ୟ କାମ ସବୁ ଭଲ ଚାଲିଲା ନାହିଁ । ସବୁଏଁ ଯୁଦ୍ଧରେ ମାତିବାରୁ ଚାଷବାସ ପଡିଆ ପଡିଲା, ବେପାରବଣିଜ ଆଦୌ ହେଲା ନାହିଁ, ଦିଅଁଦେବତାଙ୍କ କଥା କେହି ବୁଝିଲେ ନାହିଁ । ତହୁଁ ସେମାନେ ଆପଣା ଆପଣା ଭିତରେ ଭିନ୍ନ ଭିନ୍ନ କାର୍ଯ୍ୟ ବାଣ୍ଟିନେଲେ । ନିଜର ବିଦ୍ୟାବୁଦ୍ଧି ବଳରେ ଯେ ଯେଉଁ କାମକୁ ପାରିଲା, ସେ ସେହି କାମ ଆଦରି ନେଲା । କିଏ ଦିଅଁଦେବତା ପୂଜା କଲେ, କିଏ ଦୁଷ୍ଟ

Digitized by srujanika@gmail.com

ଶୂଦ୍ର, ଖଣ୍ଡ, ଡକାଏତଙ୍କୁ ଜବତ କରି ଦେଶରେ ଶାନ୍ତି ରଖିଲେ; କିଏ ବେପାରବଣିଜ ବା ଗୃଷବାସ କଲା । ଯେଉଁମାନେ ଦେବତା ପୁଜିଲେ, ଧର୍ମଶାସ୍ତ୍ର ଚର୍ଚ୍ଚା କଲେ, ହୋମ ଯଜ୍ଞ କଲେ, ସେମାନଙ୍କୁ ବ୍ରାହ୍ମଣ କୁହାଗଲା । ଯେଉଁମାନଙ୍କ ବାହୁରେ ବଳ ଥିଲା, ଯୁଦ୍ଧ କରି ସେମାନେ ଶତ୍ରୁମାନଙ୍କୁ ତଡ଼ିଲେ, ସେମାନଙ୍କୁ କ୍ଷତ୍ରିୟ କୁହାଗଲା । ଯେଉଁମାନେ ବେପାରବଣିଜ କରି, ଗୃଷବାସ କରି ରହିଲେ, ସେମାନେ ହେଲେ ବୈଶ୍ୟ । ଏହି ତିନି ଜାତି ଛଡ଼ା ଆଉ ଏକ ଜାତି ବାହାରିଲେ । ଯେଉଁ ଅନାର୍ଯ୍ୟମାନେ ଆର୍ଯ୍ୟମାନଙ୍କ ପାଖରେ ହାର ମାନି ସେମାନଙ୍କ ସେବା କରି ରହିଲେ, ସେମାନେ ଶୂଦ୍ର ବୋଲାଇଲେ, ଏହିପରି ଭାବରେ ପ୍ରଥମେ ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଓ ଶୂଦ୍ର ଗୃରିଜାତିର ସୃଷ୍ଟି ହେଲା । ପରେ କାମ ଗୋଟିକେ ଜାତି ଗୋଟିଏ ବୋଲି ଧରାଗଲା । ଅନେକ ବର୍ଷ ପରେ ଏକ ଏକ ଜାତିରୁ ଅନେକ ଶାଖାଜାତି ବାହାରି ଆଜିକାଲିର ହିନ୍ଦୁ ସମାଜରେ ହଜାର ହଜାର ଜାତି ହୋଇଛନ୍ତି । ଆଗେ ଜାତି ଜାତି ଭିତରେ ସାନ ବଡ଼, ଉଚ୍ଚ ନୀଚ ଭେଦଭାବ ନ ଥିଲା । ବ୍ରାହ୍ମଣ ବୈଶ୍ୟ କାର୍ଯ୍ୟ କରି ବୈଶ୍ୟ ହେଉଥିଲେ ଏବଂ ବୈଶ୍ୟ କରିଁ ଦେବତା ପୁଜି ଜ୍ଞାନବଳରେ ବ୍ରାହ୍ମଣ ମଧ୍ୟ ବୋଲାଉଥିଲେ । ଯେ ଯେଉଁ କାମକୁ ପାରୁଥିଲା, ସେ ସେ କାମ କରିପାରୁଥିଲା । ପରେ ଏ ପ୍ରଥା ବନ୍ଦ ହୋଇଗଲା । ଜାତି ଜାତି ପରସ୍ପରକୁ ହିଂସା କଲେ, ଘୃଣା କଲେ, ଅଲଗା ଅଲଗା ହୋଇ ବଡ଼ ସାନ ବାଛିଲେ; ନ ହେଲେ ସଭିଏଁ ଏକା ଜାତି, କେହି ଆଗରୁ ଜାତି ଘେନି ଜନ୍ମ ହୋଇ ନାହିଁ ।

## ରାମାୟଣ ଓ ମହାଭାରତ

ବେଦ ଲେଖା ପରେ ଆର୍ଯ୍ୟ ଋଷିମାନେ ସଂସ୍କୃତ ଭାଷାରେ ପଦ୍ୟ ଆକାରରେ ଅନେକ ବଡ଼ ବଡ଼ ପୋଥି ଲେଖିଲେ । ତନ୍ମଧ୍ୟରୁ ଦୁଇଟି ମହାକାବ୍ୟ ହେଉଛି, ରାମାୟଣ ଓ ମହାଭାରତ । ବାଲ୍ମୀକି ଋଷି ରାମାୟଣ ଓ ବେଦବ୍ୟାସ ମହାଭାରତ ଲେଖିଥିଲେ । ଏଥିରୁ ସେ ଯୁଗର

Digitized by srujanika@gmail.com

ଲୋକଙ୍କର ଆଚାରବ୍ୟବହାର, ରୀତିଚଳଣି କଥା ଜଣାପଡ଼େ । ହିନ୍ଦୁମାନେ ଆଜି ଭକ୍ତିରେ ଘରେ ଘରେ ରାମାୟଣ ମହାଭାରତ ରଖି ପଢ଼ନ୍ତି ।

## ରାମାୟଣ—

ଉତ୍ତର-ଭାରତରେ ଅଯୋଧ୍ୟା ବୋଲି ଖଣ୍ଡିଏ ଛୋଟିଆ ରାଜ୍ୟ ଥିଲା । ସେଠି ସୂର୍ଯ୍ୟବଂଶର ରାଜାମାନେ ରାଜୁତି କରୁଥିଲେ । ସେ ବଂଶରେ ଅନେକ ବଡ଼ ବଡ଼ ନାମଜାଦା ରାଜା ବାହାରିଥିଲେ । ଦଶରଥ ସେଥିମଧ୍ୟରୁ ଜଣେ । ସେ ଏତେ ପରାକ୍ରମୀ ଥିଲେ ଯେ, ତାଙ୍କର ସବୁ ଦିଗକୁ ରଥ ଯାଉଥିଲା । କୌଶଲ୍ୟା, କୈକେୟୀ ଓ ସୁମିତ୍ରା ବୋଲି ତାଙ୍କର ତିନୋଟି ରାଣୀ ଥିଲେ । ରାମ, ଲକ୍ଷ୍ମଣ, ଭରତ ଓ ଶତ୍ରୁଘ୍ନ ବୋଲି ତିନି ରାଣୀଙ୍କର ଚାରୋଟି ପୁଅ ହେଲେ । ବଡ଼ ପୁଅ ରାମଚନ୍ଦ୍ର କୌଶଲ୍ୟାଙ୍କ ପୁଅ, ଭରତ କୈକେୟୀଙ୍କ ପୁଅ, ଲକ୍ଷ୍ମଣ ଓ ଶତ୍ରୁଘ୍ନ ସାନରାଣୀ ସୁମିତ୍ରାଙ୍କ ପୁଅ । ବଡ଼ ପୁଅ ରାମ ମିଥିଳା ଦେଶର ରାଜା ଜନକଙ୍କ ଝିଅ ସୀତାଙ୍କୁ ବାହା ହୋଇଥିଲେ ।

ଦଶରଥ ଥରେ ଖୁବ୍ ବେମାରରେ ପଡ଼ିଲେ । ସେହି ସମୟରେ ମଝିଆଁ ରାଣୀ କୈକେୟୀ ଖୁବ୍ ସେବା କରି ତାଙ୍କୁ ବଞ୍ଚାଇଥିଲେ । ତେଣୁ ଦଶରଥ ଖୁସି ହୋଇ କୈକେୟୀଙ୍କୁ ଯୋଡ଼ାଏ ବର ଦେବେ ବୋଲି କହିଥିଲେ ।

ଥରେ ଦଶରଥ ବସିଲେ ଯେ, ବଡ଼ ପୁଅ ରାମଚନ୍ଦ୍ରଙ୍କୁ ଯୁବରାଜ କରିଦେଇ ନିଜେ ଶାନ୍ତିରେ ରହିବେ । ଯେଉଁ ଦିନ ରାମ ଗାଦିରେ ବସିବା କଥା ହୋଇଥିଲା, ଠିକ୍ ତା ପୂର୍ବଦିନ କୈକେୟୀ ରାଣୀ ମନ୍ଥରା ବୋଲି ଏକ ଦାସୀର ଘରଭଙ୍ଗା କଥାରେ ପଡ଼ି ଦଶରଥଙ୍କୁ ବର ମାଗିଲେ— ରାମ ଚଉଦ ବର୍ଷ ବଣକୁ ଯିବେ ଓ ଭରତ ରାଜା ହେବେ । ପିତା ବର ଦେବାକୁ ସତ୍ୟ କରିଥିବା କଥା ଜାଣି ରାମ ବଣକୁ ବାହାରିଗଲେ । ଲକ୍ଷ୍ମଣ ଓ ସୀତା ତାଙ୍କୁ ଛାଡ଼ି ଘରେ ରହିବାକୁ ଇଚ୍ଛା କଲେ ନାହିଁ । କାହାରି କଥା ନ ମାନି ସେ ଦୁହେଁ ମଧ୍ୟ ତାଙ୍କ ସାଥିରେ ବଣକୁ ଗଲେ । ବୁଢ଼ା ଦଶରଥ ରାମ ପରି ପୁଅକୁ ପାଖରୁ ହରାଇ କାନ୍ଦି କାନ୍ଦି ଚିନ୍ତାରେ ମରିଗଲେ ।

Digitized by srujanika@gmail.com

ରାମ ବଣକୁ ଗଲାବେଳେ ଭରତ ଓ ଶତ୍ରୁଘ୍ନ ମାମୁଘରେ ଥିଲେ । ଭାଇ ରାଉଜଙ୍କ ବଣକୁ ଯିବା କଥା ଓ ପିତାଙ୍କ ମରଣ ଖବର ପାଇ ଦୁହେଁ ଅଯୋଧ୍ୟାକୁ ଫେରି ଆସିଲେ । ରାମଙ୍କୁ ଫେରାଇ ଆଣିବା ପାଇଁ ଭରତ ବଣକୁ ଯାଇ ତାଙ୍କ ପାଖରେ ବହୁତ କାକୁତିମିନତି କଲେ । କିନ୍ତୁ ରାମ ଏଥିରେ ଟଳେ ହେଲେ ନ ଟଳି, ଭାଇଙ୍କୁ ବୋଧବାଧ କରି ଅଯୋଧ୍ୟାକୁ ଫେରାଇ ଦେଲେ । ଭରତ ଫେରି ଆସି ସିଂହାସନରେ ରାମଙ୍କ କଠଉ ଯୋଡ଼କ ରଖି ପୂଜା କରି ନିଜକୁ ତାଙ୍କର ଦାସ ବୋଲି ମନେକରି ରାଜ୍ୟ ବୁଝିଲେ ।

ରାମ ପଞ୍ଚବଟୀ ବଣରେ ଥିଲାବେଳେ ଲଙ୍କାର ରାଜା ରାବଣର ଭଉଣୀ ସୂର୍ପଣଖା ରାମଙ୍କୁ ବାହା ହେବାକୁ ଭାବି ସୀତାଙ୍କୁ ମାରିବାକୁ ଚେଷ୍ଟା କଲା । ଲକ୍ଷ୍ମଣ ତାର ନାକକାନ କାଟି ଛାଡ଼ିଦେବାରୁ ତା ଭାଇ ରାବଣ ଦାଉ ସାଧିବ ବୋଲି ରାମ, ଲକ୍ଷ୍ମଣ କେହୁ କୁଡ଼ିଆରେ ନ ଥିବାବେଳେ କପଟବେଶରେ ସୀତାଙ୍କୁ ହରଣ କରି ନେଇଗଲା । ରାମ କିଷ୍କିନ୍ଧ୍ୟାର ରାଜା ସୁଗ୍ରୀବ ସଙ୍ଗେ ମିତ ବସି, ହନୁମାନ୍ ଓ ଅନ୍ୟାନ୍ୟ ବାନରଙ୍କ ସାହାଯ୍ୟରେ ସମୁଦ୍ରରେ ବନ୍ଧ ବାନ୍ଧି ଲଙ୍କାରେ ପଶିଲେ । ସେଠାରେ ଯୁଦ୍ଧରେ ରାବଣ ବଂଶ ଶେଷ କରି ସୀତାଙ୍କୁ ଉଦ୍ଧାର କଲେ । ସେଠାରୁ ଅଯୋଧ୍ୟାକୁ ଫେରି ଆସି ରାଜା ହେଲେ ।

କିଛି ଦିନ ପରେ ରାମ ଶୁଣିପାରିଲେ ଯେ, ସୀତାଙ୍କୁ ରାବଣ ନେଇ ଯାଇଥିଲା ବୋଲି ଲୋକେ ନିନ୍ଦା କରୁଛନ୍ତି । ସେ ପ୍ରଜାଙ୍କୁ ସନ୍ତୁଷ୍ଟ କରିବା ପାଇଁ ସୀତାଙ୍କୁ ନେଇ ବଣରେ ଏକୁଟିଆ ଛାଡ଼ିଦେଇ ଆସିଲେ । ସେତେବେଳେ ସେ ଗର୍ଭବତୀ ଥିଲେ । ବାଲ୍ମୀକି ମୁନିଙ୍କ ଆଶ୍ରମରେ ତାଙ୍କର ଦୁଇଟି ପୁଅ ଜନ୍ମ ହେଲେ । ବଡ଼ ପୁଅ ନାଁ ଲବ ଓ ସାନ ପୁଅ ନାଁ କୁଶ । ବାଲ୍ମୀକି ମୁନି ଦୁଇ ଭାଇଙ୍କୁ ଭଲ କରି ପାଠ ପଢ଼ାଇ ନିଜେ ଲେଖିଥିବା ରାମାୟଣ ଗୀତ ଶିଖାଇଦେଲେ ।

ପରେ ରାମ ଏକ ଅଶ୍ୱମେଧ ଯଜ୍ଞ କରି ଅନେକ ଯୋଗୀ ଋଷିଙ୍କୁ ନିମନ୍ତ୍ରଣ କଲେ । ସେହି ଯଜ୍ଞକୁ ବାଲ୍ମୀକି ଲବକୁଶ ଦୁଇ ଭାଇଙ୍କୁ ନେଇ ଯାଇଥିଲେ । ଦୁଇ ଭାଇ ସେଠାରେ ମୁହେଁ ମୁହେଁ ରାମାୟଣ ବୋଲି ସମସ୍ତଙ୍କୁ ଆଶ୍ଚର୍ଯ୍ୟ କରିଦେଲେ । ସେହିଠାରେ ରାମ ନିଜ ପୁଅ ଦୁହିଙ୍କୁ ଚିହ୍ନିଲେ ।

Digitized by srujanika@gmail.com

ଅଳ୍ପ କେତେ ଦିନ ପରେ ସେ ସେମାନଙ୍କ ଉପରେ ରାଜ୍ୟଭାର ଦେଇ ସ୍ୱର୍ଗକୁ ଗଲେ ।

## ମହାଭାରତ—

ଦିଲ୍ଲୀ ସହରର ପୂର୍ବକୁ ଗଙ୍ଗା ନଦୀ କୂଳରେ ଆଜକୁ ଅନେକ ବର୍ଷ ତଳେ ହସ୍ତିନାପୁର ବୋଲି ଏକ ରାଜ୍ୟ ଥିଲା । ସେହି ରାଜ୍ୟରେ କୁରୁ ବୋଲି ଜଣେ ନାମଜାଦା ରାଜା ରାଜୁତି କରୁଥିଲେ । ତାଙ୍କର ନାଁରୁ ପରେ ତାଙ୍କ ବଂଶର ନାଁ କୁରୁବଂଶ ହେଲା ।

କୁରୁଙ୍କର ଅନେକ ବର୍ଷ ପରେ ସେହି ବଂଶରେ ଧୃତରାଷ୍ଟ୍ର ଓ ପାଣ୍ଡୁ ନାମରେ ଦୁଇ ଭାଇ ଜନ୍ମ ହେଲେ । ଭାଇ ଧୃତରାଷ୍ଟ୍ର ଜନ୍ମରୁ ଅନ୍ଧ ଥିବାରୁ ସାନ ଭାଇ ପାଣ୍ଡୁଙ୍କୁ ରାଜ୍ୟ ବୁଝିବାକୁ ପଡ଼ିଲା । ଧୃତରାଷ୍ଟ୍ର ସ୍ତ୍ରୀଙ୍କ ନାଁ ଗାନ୍ଧାରୀ । ତାଙ୍କର ଶହେ ପୁଅ । ଦୁର୍ଯ୍ୟୋଧନ ସବୁଠୁଁ ବଡ଼ । ଏମାନଙ୍କୁ କୌରବ କୁହା-ଯାଉଥିଲା । ପାଣ୍ଡୁଙ୍କର ଦୁଇ ସ୍ତ୍ରୀ—କୁନ୍ତୀ ଓ ମାଦ୍ରୀ । ଯୁଧିଷ୍ଠିର, ଭୀମ, ଅର୍ଜୁନ, ନକୁଳ ଓ ସହଦେବ ବୋଲି ଏହି ଦୁଇ ରାଣୀଙ୍କର ପାଞ୍ଚ ପୁଅ ଜନ୍ମ ହେଲେ । ଏମାନଙ୍କୁ ପାଣ୍ଡବ କହନ୍ତି । ପାଣ୍ଡୁ କିଛି ଦିନ ରାଜା ହୋଇ ମରିଯିବାରୁ ପାଣ୍ଡବମାନେ ଧୃତରାଷ୍ଟ୍ରଙ୍କ ବୁଝାଶୁଝାରେ ରହିଲେ ।

କୌରବ ଭାଇମାନେ ବଡ଼ ଦୁଷ୍ଟ ଓ କଳିହା । ପାଣ୍ଡବମାନେ ବଡ଼ ଶାନ୍ତ ଓ ଧାର୍ମିକ । ରାଜ୍ୟଲୋକେ ପାଣ୍ଡବମାନଙ୍କୁ ଭାରି ଭଲ ପାଉଥିଲେ । ଏ କଥା କୌରବ ଭାଇମାନଙ୍କ ଦେହରେ ଗଲା ନାହିଁ । ବଡ଼ଭାଇ ଦୁର୍ଯ୍ୟୋଧନ ସବୁବେଳେ ପାଣ୍ଡବଙ୍କ ଅନିଷ୍ଟ ଚିନ୍ତା କଲା । ଥରେ ସେ ପାଣ୍ଡବ ପାଞ୍ଚଭାଇଙ୍କୁ ଏକ ଜଉ ଘରେ ରଖାଇ ନିଆଁ ଲଗାଇ ଦେଇଥିଲା । କିନ୍ତୁ ପାଣ୍ଡବମାନେ ଆଗରୁ ଏ କଥା ଜାଣିପାରି ବାଟ କାଟି ଚାଲିଯାଇଥିଲେ । ଆଉ ଥରେ ଦୁର୍ଯ୍ୟୋଧନ ଭୀମକୁ ବିଷ ଦେଇ ପାଣିରେ ବୁଡ଼ାଇ ମାରୁଥିଲା; ଭୀମ ମଲା ନାହିଁ । ଏହିପରି କୌଣସ କଥାରେ ନ ପାରି ଖଳ ଦୁର୍ଯ୍ୟୋଧନ କପଟ ପଶା ଖେଳରେ ପାଣ୍ଡବ-ମାନଙ୍କ ରାଜ୍ୟଧନ ସବୁ ହରି ନେଇଗଲା ଓ ସେମାନଙ୍କୁ ୧୨ ବର୍ଷ ବନବାସ, ବର୍ଷେ ଅଜ୍ଞାତ ବାସ ପାଇଁ ବଣକୁ ତଡ଼ିଦେଲା ।

Digitized by srujanika@gmail.com

ପାଣ୍ଡବମାନେ ତେର ବର୍ଷ ପରେ ରାଜ୍ୟକୁ ଫେରି ଆସି ଦୁର୍ଯ୍ୟୋଧନଙ୍କୁ ରାଜ୍ୟ ମାଗିଲେ । ଦୁର୍ଯ୍ୟୋଧନ କିଛି ଦେଲା ନାହିଁ । ତହୁଁ କୌରବ ଓ ପାଣ୍ଡବ ଭାଇମାନଙ୍କ ମଧ୍ୟରେ କୁରୁକ୍ଷେତ୍ର ବୋଲି ଏକ ସ୍ଥାନରେ ଯୁଦ୍ଧ ହେଲା । ଏହା ଅଠର ଦିନ କାଳ ଲାଗିଲା । ଦ୍ୱାରକାର ରାଜା ଶ୍ରୀକୃଷ୍ଣ ପାଣ୍ଡବମାନଙ୍କୁ ସାହାଯ୍ୟ ଦେଇଥିଲେ । ଭାରତର ଅନେକ ବଡ ବଡ ବୀର ଓ ରାଜା ଏହି ଯୁଦ୍ଧରେ ମଲେ । ଶେଷରେ ପାଣ୍ଡବମାନେ ଜୟଲାଭ କଲେ । ଯୁଧିଷ୍ଠିର ହସ୍ତିନାର ରାଜା ହେଲେ ।

ଏହି ଯୁଦ୍ଧକୁ ମହାଭାରତ ଯୁଦ୍ଧ କହନ୍ତି । ଏହି ଯୁଦ୍ଧରେ ଆମର ଏହି ଉତ୍କଳ ଦେଶ ବା ସେହି ସମୟର କଳିଙ୍ଗ ଦେଶର ରାଜା ଶ୍ରୁତାୟୁଧ ଦୁର୍ଯ୍ୟୋଧନ ପକ୍ଷରେ ରହି ଲଢୁଥିଲେ । ଶ୍ରୁତାୟୁଧ ଓ ତାଙ୍କ ତିନି ପୁଅ ଭାନୁମାନ, କେତୁମାନ ଓ ଶୁକଦେବ ମହାଭାରତ ଯୁଦ୍ଧରେ ପ୍ରାଣ ଦେଇଥିଲେ । ଏମାନେ ଏପରି ଯୋଦ୍ଧା ଥିଲେ ଯେ, ଭୀମ ପରି ବୀର ଏମାନଙ୍କ ବୀରପଣିଆ ଦେଖି କାତର ହୋଇପଡିଥିଲେ ।

---

# ମହାବୀର ଓ ଜୈନ ଧର୍ମ

ଆଜିକାଲି ଯାହାକୁ ବିହାର କହନ୍ତି, ସେହି ପ୍ରଦେଶର ମଜଫରପୁର ଜିଲ୍ଲାରେ ପୂର୍ବେ ବୈଶାଳୀ ବୋଲି ଏକ ରାଜ୍ୟ ଥିଲା । ଏହି ରାଜ୍ୟରେ କେହି ରାଜା ନ ଥିଲେ; କେତେଗୋଟି କ୍ଷତ୍ରିୟ ପରିବାର ଏକାଠି ମିଳି ରାଜ୍ୟ ଶାସନ କରୁଥିଲେ । ମହାବୀର ଏହିପରି ଏକ କ୍ଷତ୍ରିୟ ରାଜବଂଶରେ ଜାତ ହୋଇଥିଲେ । ତାଙ୍କ ପିତାଙ୍କ ନାଁ ସିଦ୍ଧାର୍ଥ ଓ ମାତାଙ୍କ ନାଁ ତ୍ରିଶଳା ।

ପିଲାଦିନୁଁ ମହାବୀର ବଡ଼ ଧୀର ଅବତାର ଥିଲେ । ସେ ବିବାହ କରିଥିଲେ । ସଂସାର ତାଙ୍କୁ ସୁଖ ଲାଗିଲା ନାହିଁ । ସେ ଅଳ୍ପ ବୟସରେ ଘରଦ୍ୱାର ଛାଡି ସନ୍ନ୍ୟାସୀ ହୋଇ ଚାଲିଗଲେ । ପ୍ରଥମେ ସେ ଯାଇ ମହାତ୍ମା ପରେଶନାଥଙ୍କ ଶିଷ୍ୟଦଳରେ ମିଶିଲେ; କିନ୍ତୁ ସେମାନଙ୍କ ସଙ୍ଗରେ ସେ ବେଶୀ ଦିନ ନ ରହି ବଣରେ ବାରବର୍ଷ କାଳ ତପସ୍ୟା କଲେ । ତପସ୍ୟା ପରେ ନିଜେ ଏକ ନୂଆ

Digitized by srujanika@gmail.com

ଧର୍ମ ପ୍ରଚାର କଲେ । ସେହି ଧର୍ମର ନାଁ ଜୈନ ଧର୍ମ । ମହାବୀରଙ୍କର ପ୍ରକୃତ ନାଁ ବର୍ଦ୍ଧମାନ ଥିଲା । ତାଙ୍କର ଶିଷ୍ୟମାନେ ତାଙ୍କୁ ମହାବୀର ବୋଲି ଡାକୁଥିଲେ । ସେ ସଂସାରର କୌଣସି ଜିନିଷରେ ଧାର ଧାରୁ ନ ଥିଲେ । ଏପରି କି ଲୁଗା ଖଣ୍ଡିଏ ସୁଦ୍ଧା ପିନ୍ଧୁ ନ ଥିଲେ । ସେ ଜୀବନର ତିରିଶ ବର୍ଷ କାଳ ଭାରତର ଚାରିଆଡେ ବୁଲି ଧର୍ମ ପ୍ରଚାର କଲେ । ଖ୍ରୀ. ପୂ. ୫୨୭ ରେ ପାଟଣା ଜିଲ୍ଲାର ପାବା ନାମକ ସ୍ଥାନରେ ୭୨ ବର୍ଷ ବୟସରେ ତାଙ୍କର ମୃତ୍ୟୁ ହେଲା । ପାବା ବର୍ତ୍ତମାନ ଜୈନମାନଙ୍କର ଏକ ପ୍ରଧାନ ତୀର୍ଥସ୍ଥାନ ।

ଜୀବପ୍ରତି ଦୟା ଜୈନ ଧର୍ମର ପ୍ରଧାନ ଅଙ୍ଗ । କାଳେ କୀଟ ପତଙ୍ଗ ନାକରେ ପାଟିରେ ପଶି ମରିଯିବେ, ଏଥିପାଇଁ କେହି କେହି ଜୈନ ମୁହଁରେ ଲୁଗା ବାନ୍ଧି ବୁଲୁଥିଲେ । କୀଟ ପତଙ୍ଗ ନିଆଁରେ ପଡି ମରିଯିବା ଭୟରେ ଜୈନମାନେ ରାତିରେ ନିଆଁ ମଧ୍ୟ ଜାଳନ୍ତି ନାହିଁ । ଏମାନଙ୍କ ମଧ୍ୟରେ ଜାତିଭେଦ ଅଛି । ଏମାନେ ହିନ୍ଦୁମାନଙ୍କ ବେଦକୁ ମାନନ୍ତି ନାହିଁ ।

ଜୈନମାନେ ଦୁଇ ପ୍ରଧାନ ଭାଗରେ ବିଭକ୍ତ—ଶ୍ୱେତାମ୍ବର ଓ ଦିଗମ୍ବର । ଶ୍ୱେତାମ୍ବରମାନେ ଧଳା ଲୁଗା ପିନ୍ଧନ୍ତି ଓ ଦିଗମ୍ବରମାନେ ଲଙ୍ଗଳା ହୋଇ ରହନ୍ତି । ରାଜପୁତନାର ଆବୁ ପାହାଡ ଓ ହଜାରିବାଗର ପରେଶନାଥ ପାହାଡ ଏମାନଙ୍କର ପ୍ରଧାନ ତୀର୍ଥ । ଗୁଜରାଟ ଅଞ୍ଚଳରେ ଏମାନଙ୍କ ସଂଖ୍ୟା ବେଶି । ଭାରତ ଛଡା ଅନ୍ୟାନ୍ୟ ଦେଶରେ ଜୈନ ନାହାନ୍ତି । ଏମାନେ ଭାରି ଧନୀ ବଣିକ । ଦାନଧର୍ମରେ ଆଜିକାଲି ଏମାନେ ବହୁତ ଅର୍ଥ ବ୍ୟୟ କରନ୍ତି ।

---

# ଗୌତମ ବୁଦ୍ଧ ଓ ବୌଦ୍ଧ ଧର୍ମ

କାଶୀଠାରୁ ପ୍ରାୟ ପଚାଶ କୋଶ ଉତ୍ତରରେ ନେପାଳ ରାଜ୍ୟର ଦକ୍ଷିଣକୁ କପିଳବାସ୍ତୁ ବୋଲି ଏକ ରାଜ୍ୟ ଥିଲା । ପ୍ରାୟ ଅଢେଇ ହଜାର ବର୍ଷ ତଳେ ସେଠାରେ ଶୁଦ୍ଧୋଦନ ବୋଲି ଜଣେ କ୍ଷତ୍ରିୟ ରାଜା ରାଜୁତି କରୁଥିଲେ । ତାଙ୍କ

Digitized by srujanika@gmail.com

ରାଣୀଙ୍କ ନାଁ ମାୟାଦେବୀ । ଶୁଦ୍ଧୋଦନଙ୍କ ବୃଦ୍ଧବୟସରେ ମାୟାଦେବୀଙ୍କର ଗୋଟିଏ ପୁଅ ହେଲା । ପୁଅଟି ନାଁ ଗୌତମ । ଗୌତମ ଜନ୍ମ ହେବାର ସାତ ଦିନ ପରେ ମାୟାଦେବୀଙ୍କର କାଳ ହୋଇଗଲା ।



ପିଲାଦିନୁ ଗୌତମ ଏକୁଟିଆ ବୁଲିବାକୁ, ଗଛମୂଳେ ନିର୍ଜନ ପଡ଼ିଆରେ ବସିବାକୁ ଭଲ ପାଉଥିଲେ । ତାଙ୍କୁ ଏପରି ଦେଖି ଶୁଦ୍ଧୋଦନଙ୍କ ମନରେ ଚିନ୍ତା ହେଲା । ଗୋଟିଏ ବୋଲି ପୁଅ, କାଳେ ସେ ବାବାଜି ହୋଇ ବୁଲିଯିବ, ଶୁଦ୍ଧୋଦନଙ୍କୁ ଏହି ସନ୍ଦେହ ସବୁବେଳେ ଘୂରିଲା । ସେ ପୁଅର ମନ ଭୁଲାଇବା ପାଇଁ ତାକୁ ଖୁବ୍ ଭୋଗବିଳାସରେ ରଖାଇଲେ, ତଥାପି ଚଳାଇ ଦେଲେ ନାହିଁ; ମନ ଭୁଲାଇବାରେ ଟିକିଏ ହେଲେ ହେଳା କଲେ ନାହିଁ । ବୟସ ହେଲାରୁ ଗୋପା ବୋଲି ଏକ ସୁନ୍ଦରୀ କନ୍ୟା ସଙ୍ଗେ ତାଙ୍କୁ ବିଭା କରାଇ ଦେଲେ । କିନ୍ତୁ ଏ କୌଣସିଥିରେ ଗୌତମଙ୍କ ମନ ତିଳେ ହେଲେ ବଦଳିଲା ନାହିଁ । ଯେତିକି ତାଙ୍କର ବୟସ ବଢ଼ିଲା, ସେତିକି ଭୋଗବିଳାସରୁ ତାଙ୍କ ମନ କୋହଳ ହୋଇ ଆସିଲା । ସେ ଦେଖିଲେ, ଜୀବନରେ ସୁଖଠାରୁ ଦୁଃଖ ବେଶୀ । ଜୀବମାନେ ରୋଗ, ଶୋକ ଭୋଗ କରୁଛନ୍ତି, ବୁଢ଼ା ଓ ଦୁର୍ବଳ ହୋଇ ପଡ଼ୁଛନ୍ତି । ଥରେ ସେ ଗୋଟିଏ ବୁଢ଼ାକୁ ଥରି ଥରି ଚାଲୁଥିବାର ଦେଖି ଏବଂ ଆଉ ଥରେ ଏକ ମଲା ମଣିଷକୁ କୋକେଇରେ ବନ୍ଧାହୋଇ ଯାଉଥିବା ଅବସ୍ଥାରେ ଦେଖି ତାଙ୍କ ମନରେ ଭାରି ଦୁଃଖ ହେଲା । ଲୋକଙ୍କୁ ଏ ଦୁଃଖରୁ କିପରି ସେ ରକ୍ଷା କରିବେ, ଦିନରାତି ଏହି କଥା ଚିନ୍ତା କଲେ । ଏହି ଚିନ୍ତାରେ ବ୍ୟାକୁଳ ହୋଇ ଦିନେ ରାତିରେ ନିଜର ସ୍ତ୍ରୀ ଓ ଶିଶୁ ପୁଅଟିକୁ ଶୋଇଥିବାବେଳେ ଛାଡ଼ିଦେଇ ଘରୁ ବାହାରିଗଲେ । ପ୍ରଥମେ ଯାଇ ସେ ବୈଶାଳୀ ନାମକ ସ୍ଥାନରେ ଜଣେ ବ୍ରାହ୍ମଣ ପଣ୍ଡିତଙ୍କ ପାଖରେ

Digitized by srujanika@gmail.com

କିଛି ଦିନ ପାଠ ପଢ଼ିଲେ । ସେଠାରେ ମନ ନ ମାନିବାରୁ ରାଜଗୃହଠାରେ ଆଉ ଜଣେ ପଣ୍ଡିତଙ୍କ ପାଖରେ ରହିଲେ । ସେଠି ବି ମନ ମାନିଲା ନାହିଁ । ତହୁଁ ସେ ଗୟା ପାଖ ଘୋର ଜଙ୍ଗଲରେ ଛଅ ବର୍ଷ କାଳ ତପସ୍ୟାରେ ବସିଲେ । ଏଥିରେ ସେ କଣ୍ଠା ପରି ଶୁଖିଗଲେ । ଦେହରେ ପଲେ ହେଲେ ମାଂସ ରହିଲା ନାହିଁ । ତପସ୍ୟାରେ କିଛି ଫଳ ନ ପାଇ ଆଉ ଥରେ ମନକୁ ଖୁବ୍ ଦୃଢ଼ କରି ବୋଧିଦ୍ରୁମ ତଳେ ବସି ପୁଣି ତପସ୍ୟା ଆରମ୍ଭ କଲେ । ଏହି-ଥର ସେ ଜ୍ଞାନ ଲାଭ କରି 'ବୁଦ୍ଧ' ଅର୍ଥାତ୍ ଜ୍ଞାନୀ ହେଲେ । ମନୁଷ୍ୟମାନେ କପରି ଦୁଃଖଭୋଗରୁ ମୁକ୍ତି ପାଇ ପାରିବେ, ଥରେ ମରି ଆଉ ଥରେ ଜନ୍ମ ହେବେ ନାହିଁ, ଏହି ବାଟ ସେ ଜ୍ଞାନବଳରେ ଲାଭ କରି ଧର୍ମ ପ୍ରଚାରରେ ବାହାରିଲେ । ଯେଉଁଠାରେ ଗୌତମ ଜ୍ଞାନ ଲାଭ କରିଥିଲେ, ଆଜିକାଲି ସେହିଠାରେ ବୁଦ୍ଧଗୟା ମନ୍ଦିର ଅଛି ।

ବୁଦ୍ଧଦେବ ଯେଉଁ ନୂଆ ଧର୍ମ ପ୍ରଚାର କଲେ, ତହିଁରେ ଲୋକଙ୍କ ମନ ମାନିଲା । ଦେଖୁ ଦେଖୁ ଅନେକ ଲୋକ ତାଙ୍କ ଧର୍ମ ଗ୍ରହଣ କଲେ । ମଗଧର ରାଜା ବିମ୍ବିସାର ଓ ଅଜାତଶତ୍ରୁ ତାଙ୍କର ଶିଷ୍ୟ ହୋଇପଡ଼ିଲେ । ତାଙ୍କ ନିଜ ବଂଶର ଲୋକେ ମଧ୍ୟ ତାଙ୍କ ଧର୍ମ ଗ୍ରହଣ କଲେ । ବୁଦ୍ଧଦେବ ଖ୍ରୀ. ପୂ. ୫୬୭ ଅବ୍ଦରେ ଜନ୍ମ ହୋଇଥିଲେ । ଅଶୀ ବର୍ଷ ବୟସରେ କୁଶୀ ନଗରଠାରେ ସେ ଦେହ ଛାଡ଼ିଲେ ।

ବୁଦ୍ଧଦେବଙ୍କ ପରେ ମୌର୍ଯ୍ୟବଂଶର ସମ୍ରାଟ୍ ଅଶୋକ ଓ ଶକରାଜା କନିଷ୍କ ଏହି ଧର୍ମ ଗ୍ରହଣ କରି ଏସିଆ, ଇଉରୋପ ଓ ଆଫ୍ରିକା ମହାଦେଶରେ ଧର୍ମ ପ୍ରଚାର କରାଇଲେ । ବର୍ତ୍ତମାନ ପୃଥିବୀର ତିନି ଭାଗରୁ ଏକ ଭାଗ ଲୋକ ବୌଦ୍ଧ ଅଛନ୍ତି ।

ବୌଦ୍ଧମାନେ ଜାତିଭେଦ ମାନନ୍ତି ନାହିଁ । ସବୁ ଜାତିର ଲୋକେ ଏହି ଧର୍ମ ଗ୍ରହଣ କରିପାରୁଥିଲେ । ଅହିଂସା, ସତ୍ୟ ଓ ଗୁରୁଭକ୍ତି ବୌଦ୍ଧଧର୍ମର ସାର କଥା । ଧର୍ମ ପ୍ରଚାର ପାଇଁ ବୌଦ୍ଧ-ସନ୍ନ୍ୟାସୀମାନେ ଦେଶବିଦେଶ, ଗାଁ-ଗଣ୍ଡା ବୁଲୁଥିଲେ ।

Digitized by srujanika@gmail.com

ଏକସମୟରେ ଭାରତର ଅଧିକାଂଶ ଲୋକ ବୌଦ୍ଧ ଥିଲେ । ବର୍ତ୍ତମାନ ଚୀନ, ଜାପାନ, ତିବ୍ବତ, ବ୍ରହ୍ମଦେଶ, ଶ୍ୟାମ ଓ ସିଂହଳରେ ଅସଂଖ୍ୟ ବୌଦ୍ଧ ଅଛନ୍ତି । ହିନ୍ଦୁମାନେ ବୁଦ୍ଧଦେବଙ୍କୁ ଏକ ଅବତାର ବୋଲି ମାନନ୍ତି ।

---

## ମହାବୀର ଅଲେକଜାଣ୍ଡର

ଇଉରୋପ ମହାଦେଶରେ ଗ୍ରୀସ୍ ବୋଲି ଏକ ଦେଶ ଅଛି । ସେହି ଦେଶରେ ମେସିଡନ ନାମରେ ଖଣ୍ଡିଏ ଛୋଟିଆ ରାଜ୍ୟ ଥିଲା । ଆଲେକ୍‌ଜାଣ୍ଡର ସେହି ରାଜ୍ୟର ରାଜା ଥିଲେ । ସେ ଭାରି ଯୋଦ୍ଧା ଓ ସାହସୀ ଥିଲେ । ୨୩ ବର୍ଷ ବୟସରେ ସେ ନିଜ ବାହୁବଳରେ ସମସ୍ତ ଗ୍ରୀସ୍ ଦେଶ ଜିଣି ଦିଗ୍‌ବିଜୟରେ ବାହାରିଲେ । ବାଟରେ ପାରସ୍ୟ ଦେଶ ଜିଣି ଖ୍ରୀଃ ପୂଃ ୩୨୭ ଅବ୍ଦରେ ସେ ଭାରତବର୍ଷକୁ ଆସିଲେ । ପ୍ରଥମେ ସେ ସିନ୍ଧୁ ନଦୀର ଆଟକଠାରେ ନୌକାରେ ଏକ ବନ୍ଧ କରି ପଞ୍ଜାବର ତକ୍ଷଶିଳା ରାଜ୍ୟରେ ଆସି ପହଞ୍ଚିଲେ । ସେତେବେଳେ ପଞ୍ଜାବରେ ଅନେକ ସାନ ସାନ ରାଜା ଥିଲେ । ଭୟରେ କେହି ତାଙ୍କୁ ବାଧା ଦେଲେ ନାହିଁ । ତକ୍ଷଶିଳାର ରାଜା ତାଙ୍କ ପାଖରେ ଶରଣ ପଶିଲେ ।

ମାତ୍ର ଜଣେ ଯୁଦ୍ଧକୁ ବାହାରିଲେ । ତାଙ୍କ ନାଁ ପୁରୁ । ବିତସ୍ତା ଓ ଚନ୍ଦ୍ରଭାଗା ନଦୀର ମଝିରେ ପୁରୁଙ୍କର ରାଜ୍ୟ ଥିଲା । ରାଜ୍ୟ ଛୋଟିଆ ହେଲେ ହେଁ ଜଣ ହେଲା, ରାଜା ପୁରୁଙ୍କ ହୃଦୟରେ କମ୍ ସାହସ ନ ଥିଲା । ନିଜର ସୈନ୍ୟ-ବଳ ନେଇ ସେ ଆଲେକ୍‌ଜାଣ୍ଡରଙ୍କୁ ବାଧା ଦେବାକୁ ଗଲେ । ଦୁଇ ପକ୍ଷରେ ଭୟଙ୍କର ଲଢେଇ ହେଲା । ପୁରୁଙ୍କ ପୁଅ ଯୁଦ୍ଧରେ ମଲେ । ସେ ନିଜେ ଦେହରେ ଆଠ ଦଶଟା ଆଘାତ ପାଇ ହାରିଲେ । ଶତ୍ରୁମାନେ ତାଙ୍କୁ ବନ୍ଦୀ କରି ଆଲେକ୍‌ଜାଣ୍ଡରଙ୍କ ପାଖକୁ ନେଇଗଲେ । ତାଙ୍କୁ ଦେଖି ଆଲେକ୍‌ଜାଣ୍ଡର ପଚାରିଲେ, "ମୋଠାରୁ ଆପଣ କିପରି ବ୍ୟବହାର ପାଇବାକୁ ଆଶା କରନ୍ତି ?" ବନ୍ଦୀ ପୁରୁ ଟିକେ ନ ଡରି କହିଲେ, "ଆପଣ ରାଜା, ମୁଁ ମଧ୍ୟ ରାଜା । ରାଜା

Digitized by srujanika@gmail.com

ରାଜାଙ୍କୁ ଯେପରି ବ୍ୟବହାର ଦେଖାନ୍ତି, ଆପଣ ମୋତେ ସେହିପରି ବ୍ୟବହାର ଦେଖାଇବେ ବୋଲି ଆଶା କରେ ।” ଆଲେକଜାଣ୍ଡର ଏହି ଉତ୍ତରରେ ଖୁସି ହୋଇ ତାଙ୍କୁ ତାଙ୍କ ରାଜ୍ୟ ଫେରାଇ ଦେଲେ ଓ ଅଉ କିଛି ଜିଣିଥିବା ରାଜ୍ୟ ମଧ୍ୟ ତା ସହିତ ପୁରସ୍କାର ସ୍ୱରୂପ ଦେଲେ । ପୁରୁ ତାଙ୍କର ବନ୍ଧୁ ହୋଇ ରହିଲେ ।



ପଞ୍ଜାବ ରାଜ୍ୟ ଜିଣି ଆହୁରି ପୂର୍ବକୁ ଯାଇ ମଗଧ ରାଜ୍ୟ ଜିଣିବା ଲାଗି ଅଲେକ୍‌ଜାଣ୍ଡରଙ୍କର ଇଚ୍ଛା ଥିଲା । ମାତ୍ର ତାଙ୍କ ସୈନ୍ୟମାନେ ବହୁତ ଯୁଦ୍ଧ କରି କରି ଥକି ପଡିବାରୁ ବାଧ୍ୟ ହୋଇ ସେ ନିଜ ରାଜ୍ୟକୁ ଫେରିଲେ । ସିନ୍ଧୁ ଦେଶ-ବାଟେ ସିନ୍ଧୁ ନଦୀରେ ନାଆରେ ଚାଲିବେଳେ କେତେ ସ୍ଥାନରେ ତାଙ୍କୁ ଯୁଦ୍ଧ କରିବାକୁ ପଡିଥିଲା । ବାଟରେ ମୂଲତାନ ରାଜ୍ୟକୁ ଜିଣି ବେଲୁଚିସ୍ଥାନ ବାଟ ଦେଇ ଖ୍ରୀଃ ପୂଃ ୩୨୫ ଅବ୍ଦରେ ସେ ପାରସ୍ୟ ଦେଶରେ ଯାଇ ପହଞ୍ଚିଲେ । ବାଟରେ ବାବିଲନ ନଗରରେ ତାଙ୍କର ମୃତ୍ୟୁ ହେଲା । ତାଙ୍କର ପୁଅ ନ ଥିବାରୁ

Digitized by srujanika@gmail.com

ତାଙ୍କ ଅନ୍ତେ ତାଙ୍କ ସେନାପତିମାନେ ରାଜ୍ୟ ସବୁ ଖଣ୍ଡ ଖଣ୍ଡ କରି ବାଣ୍ଟି-ନେଲେ ।

ଆଲେକଜାଣ୍ଡରଙ୍କ ପରି ବୀର ଏ ପର୍ଯ୍ୟନ୍ତ ପୃଥିବୀରେ ଅତି ଅଳ୍ପ ଜନ୍ମ ହୋଇଛନ୍ତି ।

---

## ଚନ୍ଦ୍ରଗୁପ୍ତ

ବିହାରର ଗୋଟିଏ ଅଞ୍ଚଳର ନାମ ଆଗେ ମଗଧ ଥିଲା । ମଗଧ ଅତି ପ୍ରାଚୀନ ରାଜ୍ୟ । ନନ୍ଦବଂଶର ରାଜାମାନେ ଏଠାରେ ରାଜୁତି କରୁଥିଲେ । ଚନ୍ଦ୍ରଗୁପ୍ତ ଏହି ନନ୍ଦବଂଶର ଏକ ବଂଶଧର । ପ୍ରବାଦ ଅଛି ଯେ, ନନ୍ଦବଂଶର ଶେଷରାଜା ମହାନନ୍ଦଙ୍କର ମୁରା ବୋଲି ଏକ ଭଣ୍ଡାରୁଣୀ ଦାସୀ ଗର୍ଭରୁ ଚନ୍ଦ୍ରଗୁପ୍ତ ଜାତ ହୋଇଥିଲେ ।

କି କାରଣରୁ କହି ହେବ ନାହିଁ, ଯୌବନରେ ମହାନନ୍ଦଙ୍କ ପୁତ୍ର-ମାନଙ୍କ ସହିତ ଚନ୍ଦ୍ରଗୁପ୍ତଙ୍କର ଅପଟ ହେବାରୁ ସେ ପ୍ରାଣଭୟରେ ରାଜ୍ୟ ଛାଡି ପଳାଇଲେ । ସେହି ସମୟରେ ଆଲେକଜାଣ୍ଡର ପଞ୍ଜାବରେ ରାଜ୍ୟ ଜିଣୁଥାନ୍ତି । ଚନ୍ଦ୍ରଗୁପ୍ତ ତାଙ୍କ ପାଖରେ ଆଶ୍ରୟ ନେଇ ନନ୍ଦବଂଶର ସବୁ କଥା ତାଙ୍କୁ କହିଲେ ଏବଂ ତାଙ୍କ ସେନା ଛାଉଣୀରେ ରହି ଗ୍ରୀସ୍ ଦେଶର ଯୁଦ୍ଧପ୍ରଣାଳୀ ଶିଖିଲେ ।

ନନ୍ଦରାଜାମାନେ କ୍ଷତ୍ରିୟ ଓ ବ୍ରାହ୍ମଣମାନଙ୍କୁ ବଡ କଷ୍ଟ ଦେଉଥିଲେ । ଥରେ ଚାଣକ୍ୟ ବୋଲି ଜଣେ ବ୍ରାହ୍ମଣଙ୍କୁ ସେମାନେ ବଡ ଅପମାନ ଦେଲେ । ଚାଣକ୍ୟ ଅପମାନ ପାଇ ଦାଉ ସାଧିବେ ବୋଲି ଖୋଜି ବୁଲିଲେ । ସେ ଭାରି ବିଚକ୍ଷଣ ଲୋକ ଥିଲେ । କୂଟ ରାଜନୀତି ତାଙ୍କୁ ବେଶ୍ ଜଣାଥିଲା । ତେଣେ ଚନ୍ଦ୍ରଗୁପ୍ତ ବି ନନ୍ଦରାଜାଙ୍କ ଉପରେ ରାଗିଥିଲେ । ଚାଣକ୍ୟଙ୍କ ମନ୍ତ୍ରଣା ବଳରେ ସେ ନନ୍ଦରାଜାଙ୍କ ବିପକ୍ଷରେ ଉଠି ନନ୍ଦବଂଶ ଶେଷ କଲେ ଏବଂ ଖ୍ରୀ, ପୂ, ୩୨୧ ଅବ୍ଦରେ ମଗଧରେ ରାଜା ହେଲେ ।

ନନ୍ଦରାଜାଙ୍କ ସହିତ ଯୁଦ୍ଧ କରି ସେ ଅନେକ ଥର ହାରି ଯାଇଥିଲେ । ଥରେ ହାରିଯାଇ ସେ ଗୋଟିଏ ବୁଢୀ ଘରେ ଲୁଚି କରି ରହିଲେ । ବୁଢୀ

Digitized by srujanika@gmail.com

ତାଙ୍କୁ ଚନ୍ଦ୍ରଗୁପ୍ତ ବୋଲି ଚହ୍ନି ନ ଥିଲେ । ଚନ୍ଦ୍ରଗୁପ୍ତ ଏ ପାଖରେ ବସି ସୁଙ୍କ କଥା ଶୁଣୁଛନ୍ତି, ଆର ପାଖରେ ବୁଢ଼ୀ ତା ପୁଅକୁ ଗାଳି ଦେଇ କହୁଛି —



“ହାରେ ପୁଅ, ତୁ ଶେଷରେ ଆଜି ହୋଇ ଚନ୍ଦ୍ରଗୁପ୍ତ ଯେପରି ଗୋଟିଏ ଆଡ଼୍ ନ ଯାଇ ଆଜ ଏ କଡରୁ କାଲି ସେ କଡରୁ ଆକ୍ରମଣ କରୁଅଛନ୍ତି, ତୁ ସେହିପରି ପିଠାକୁ ଗୋଟିଏ କଡରୁ ନ ଖାଇ ଏ ପାଖ ସେ ପାଖରୁ ଟିକିଏ ଟିକିଏ ଖୁଣୁଛୁ !” ଚନ୍ଦ୍ରଗୁପ୍ତ ବୁଢ଼ୀଠାରୁ ଏତିକି ଶୁଣି ଗୋଟିଏ ପାଖରୁ ରାଜ୍ୟ ଆକ୍ରମଣ କରି ଶେଷରେ ରାଜ୍ୟ ଜିଣିଥିଲେ ।

କେବଳ ମଗଧର ରାଜା ହୋଇ ସେ ସନ୍ତୁଷ୍ଟ ହୋଇ ନ ଥିଲେ । ତାଙ୍କ

ପରେ ରାଜା ସେ ସମୟରେ ସାରା ଦେଶରେ କେହି ନ ଥିଲେ । ସେ ନିଜ ବାହୁବଳରେ ଅଳ୍ପ କେତେ ବର୍ଷ ମଧ୍ୟରେ ଉତ୍ତରରେ ହିମାଳୟଠାରୁ ଦକ୍ଷିଣରେ ନର୍ମଦା ନଦୀ, ପଶ୍ଚିମରେ ହିନ୍ଦୁକୁଶ ପର୍ବତଠାରୁ ପୂର୍ବରେ ବଙ୍ଗୋପସାଗର ଯାଏ ବିଶାଳ ରାଜ୍ୟର ରାଜା ହୋଇଲେ ।

ପଚିଶ ବର୍ଷକାଳ ରାଜୁତି କରି ପରେ ଚନ୍ଦ୍ରଗୁପ୍ତ ସିଂହାସନ ଛାଡି ସନ୍ନ୍ୟାସୀ ହେଲେ । ତାଙ୍କ ପରେ ତାଙ୍କ ପୁଅ ବିନ୍ଦୁସାର ଓ ପରେ ନାତି ଅଶୋକ ରାଜା ହେଲେ ।

## ମେଗାସ୍ଥିନିସଙ୍କ ଭାରତ-ବିବରଣ—

ଯେଉଁ ଗ୍ରୀକ୍ ଦୂତ ଚନ୍ଦ୍ରଗୁପ୍ତଙ୍କ ରାଜସଭାରେ ଥିଲେ, ତାଙ୍କ ନାଁ ମେଗାସ୍ଥିନିସ୍ । ସେ ଭାରତରେ ଅନେକ ଦିନ ରହି ଏ ଦେଶର ଅବସ୍ଥା, ଲୋକଙ୍କ ଚାଲିଚଳନ ବିଷୟ ସବୁ ଲେଖିଯାଇଛନ୍ତି । ତହିଁରୁ ସେ ସମୟର ଅନେକ କଥା ମିଳେ । ସେ ଲେଖିଛନ୍ତି — ହିନ୍ଦୁମାନେ ବଡ ସରଳ ଥିଲେ । ମୋଟେ ମିଛ କହୁ ନ ଥିଲେ । ସେମାନେ ଯୁଦ୍ଧବିଦ୍ୟା ଭଲ ଜାଣୁଥିଲେ । ଦେଶରେ ଭଲ କୃଷି ହେଉଥିଲା । ସ୍ତ୍ରୀମାନଙ୍କ ସ୍ୱଭାବ ଅତି ଭଲ ଥିଲା । ଲୋକେ ଆପଣା ଆପଣା ଭିତରେ ଅଦାଲତି କଳି କରୁ ନ ଥିଲେ । ରାଜ୍ୟରେ ଚୋରି ଡକାଇତି ହେଉ ନ ଥିଲା । ସ୍ତ୍ରୀମାନେ ରାଜାଙ୍କ ପାଖରେ ଅସ୍ତ୍ର ଧରି ଜଗୁଆଳି କାମ କରୁଥିଲେ । ପ୍ରଜାଙ୍କ ମଙ୍ଗଳ ଲାଗି ସବୁ ବିଷୟରେ ରାଜା ଦୃଷ୍ଟି ଦେଉଥିଲେ । ରାଜା ନିଜକୁ ପ୍ରଜାଙ୍କର ଜଣେ ଦରମାଖିଆ ଚାକର ବୋଲି ମନେ କରି ରାଜ୍ୟ ପାଳୁଥିଲେ । ମନ୍ତ୍ରୀମାନଙ୍କ ଦସ୍ତୁରରେ ରାଜ୍ୟ ଶାସନ ଚାଲୁଥିଲା । ଲୋକଙ୍କର ସବୁ ବିଷୟରେ ସ୍ୱାଧୀନତା ଥିଲା । ସରକାର ରାଜ୍ୟରେ ଜନ୍ମମୃତ୍ୟୁର ହିସାବ ରଖୁଥିଲେ । ଉଚିତ ଖଜଣା ଆଦାୟ କରାଯାଉଥିଲା । ରୋଗୀମାନଙ୍କ ପାଇଁ ଚିକିତ୍ସାଳୟ ଥିଲା । କୁଲି ମଜୁରିଆଙ୍କର ଦରମା ଠିକ୍ କରା ହୋଇଥିଲା । କୃଷିପାଇଁ ରାଜା କେନାଲ୍, କୂଅ, ପୋଖରୀ ଖୋଳାଇ ପ୍ରଜାଙ୍କଠାରୁ ଜଳକର ନେଉଥିଲେ ।

---

Digitized by srujanika@gmail.com

## ଅଶୋକ

ଅଶୋକ ଭାରତର ଜଣେ ବିଖ୍ୟାତ ରାଜା ଥିଲେ । ଖାଲି ଭାରତରେ ନୁହେଁ, ପୃଥିବୀର ଅନ୍ୟାନ୍ୟ ଦେଶରେ ମଧ୍ୟ ତାଙ୍କୁ ଲୋକେ ଭଲ କରି ଜାଣିଥିଲେ । ସେ ଯେ କେବଳ ଦେଶ ଜୟ କରି ବଡ଼ ହୋଇଥିଲେ, ତାହା ନୁହେଁ ; ଯାହା କଲେ ପ୍ରଜାଙ୍କର ମଙ୍ଗଳ ହେବ ଏବଂ ରାଜ୍ୟରେ ଶାନ୍ତି ବିରାଜିବ, ସେଥିପାଇଁ ସେ ମନପ୍ରାଣ ଢାଳି ଦେଇଥିଲେ ।




**କଳିଙ୍ଗ ବିଜୟ—**

ଅଶୋକଙ୍କୁ ଜୀବନରେ ଥରେମାତ୍ର ଯୁଦ୍ଧ କରିବାକୁ ପଡ଼ିଥିଲା । ତାହା ହେଉଛି କଳିଙ୍ଗ ଯୁଦ୍ଧ । ଆମ ମାତୃଭୂମି ଉତ୍କଳର ନାଁ ସେତେବେଳେ

Digitized by srujanika@gmail.com

କଳିଙ୍ଗ ଥିଲା । କଳିଙ୍ଗରେ ସ୍ୱାଧୀନ ରାଜା ରାଜୁତି କରୁଥିଲେ । ଏହି ସ୍ୱାଧୀନ ରାଜ୍ୟକୁ ଜିଣି ନିଜ ରାଜ୍ୟରେ ମିଶାଇବା ପାଇଁ ଅଶୋକଙ୍କର ଇଚ୍ଛା ହେଲା । ଅଗଣିତ ସୈନ୍ୟ ଧରି ସେ କଳିଙ୍ଗ ଜିଣିବାକୁ ଆସିଲେ । ବହୁବର୍ଷ କାଳ ଘୋର ଯୁଦ୍ଧ ଚାଲିଲା । ପୁରୀ ଜିଲ୍ଲା ଧଉଳୀ ପାହାଡ଼ ପାଖରେ ଦୟାନଦୀ କୂଳରେ ଏହି ଯୁଦ୍ଧ ହୋଇଥିଲା ବୋଲି ପ୍ରବାଦ ଅଛି । ଆମ ଦେଶର ଲୋକେ ସେତେବେଳେ ଦୁର୍ବଳ ନ ଥିଲେ । ମହାଭାରତ ଯୁଦ୍ଧକୁ ଛାଡ଼ିଦେଲେ ସେପରି ଭୟଙ୍କର ଯୁଦ୍ଧ ଏ ଦେଶରେ ଆଉ କେବେ ହୋଇ ନ ଥିଲା । ଯୁଦ୍ଧରେ କେତେ ଲୋକ ମଲେ, କେତେ ଗାଁ ଗଣ୍ଡା ଶୂନ୍ୟ ହେଲା, କେତେ ନଗର ପୋଡ଼ି ଦିଆଗଲା, କେତେ ବଡ଼ ବଡ଼ ସହର ମରୁଭୂଇଁ ହୋଇ ପଡ଼ିଲା । ଦୟା ନଦୀର ପାଣି ରକ୍ତ ଧାରରେ ମିଶି ନାଲି ହୋଇଗଲା । ଶେଷରେ କଳିଙ୍ଗ ଅଶୋକଙ୍କ ହାତକୁ ଗଲା; କିନ୍ତୁ ଯୁଦ୍ଧର ଏ ବୀଭତ୍ସ ରୂପ ଦେଖି ଅଶୋକଙ୍କ ଅନ୍ତର କାନ୍ଦିଲା । ସେ ଭାବିଲେ, ତେବେ କଅଣ ସଂସାରରେ ଯୁଦ୍ଧ କେବଳ ଲୋକଙ୍କର ଏତେ ଅଶାନ୍ତି, ଏତେ ଦୁଃଖ ଦୁର୍ଦ୍ଦଶା ପାଇଁ ହୁଏ? ଏ କଥା ଭାବି ଭାବି ସେ ବାୟା ପରି ହୋଇଗଲେ । କଥା ଅଛି, ପିଲାଦିନେ ସେ ଭାରି ଦୁଷ୍ଟ ଥିଲେ । କିନ୍ତୁ ତାଙ୍କର ମନରୁ ଦୁଷ୍ଟାମି ଏହି ଯୁଦ୍ଧ ପରେ ବାହାରିଗଲା । କଳିଙ୍ଗ ଯୁଦ୍ଧ ପରେ ସେ ଜୀବନରେ ଆଉ ଯୁଦ୍ଧ କଲେ ନାହିଁ ।

ଏହା ପରେ ଅଶୋକ ଉପଗୁପ୍ତ ନାମରେ ଜଣେ ସନ୍ନ୍ୟାସୀଙ୍କଠାରୁ ବୌଦ୍ଧ ଧର୍ମ ଗ୍ରହଣ କଲେ । ବୌଦ୍ଧ ଧର୍ମର ସାର ହେଉଛି ଅହିଂସା । ଅଶୋକ ଏହି ଅହିଂସା ବ୍ରତ ଅକ୍ଷରେ ଅକ୍ଷରେ ପାଳିଲେ । ବୁଦ୍ଧଦେବ ବଞ୍ଚି-ଥିବା ବେଳେ ଅଳ୍ପ ଲୋକ ତାଙ୍କୁ ଜାଣିଥିଲେ । ଅଶୋକ ତାଙ୍କ ମହିମା ସାରା ସଂସାରରେ ଖେଳାଇଦେଲେ । ସେ ବୁଝିଲେ, ତରବାରର ଜୟ ଜୟ ନୁହେଁ, ଧର୍ମର ଜୟ ପ୍ରକୃତ ଜୟ । ଅର୍ଥାତ୍ ଲୋକଙ୍କୁ ମାରି ପିଟି ବଳ,ପରାକ୍ରମ ଦେଖାଇ ଜିଣିବା ଜିଣା ନୁହେଁ; ଧର୍ମବଳରେ ତାଙ୍କ ହୃଦୟ ଜିଣିବା ପ୍ରକୃତ ଜିଣା । ତେଣୁ ସେ ବୁଦ୍ଧଦେବଙ୍କ ଧର୍ମକଥା ଶୁଣାଇ ଲୋକଙ୍କୁ ସତ୍ ପଥକୁ ଆଣିବାକୁ ଚେଷ୍ଟା କଲେ । ଦେଶବିଦେଶରେ ବୁଲି ଏ କଥା ପ୍ରଚାର କରିବା ପାଇଁ ସାଧୁସନ୍ନ୍ୟାସୀମାନଙ୍କୁ ପଠାଇଲେ । ଧର୍ମ ଓ ନ୍ୟାୟରେ ରାଜ୍ୟ ଶାସନ କରିବାକୁ ନିଜ କର୍ମଚାରୀମାନଙ୍କୁ ଉପଦେଶ ଦେଲେ । ମଣିଷ

Digitized by srujanika@gmail.com

କଅଣ କରିବା ଉଚିତ, କଅଣ କଲେ ସଂସାରରୁ ସେ ମୁକ୍ତି ପାଇବ, ସେ ସବୁ କଥା ଦେଶର ନାନା ସ୍ଥାନରେ ପଥର, ଖମ୍ବ, ପାହାଡ ଓ ଗୁମ୍ଫାମାନଙ୍କରେ ଖୋଳାହେଲା । କର୍ମଚାରୀମାନେ କିପରି ଧର୍ମଶାସନ ଚଳାଇବେ, ସେଥିପାଇଁ ନିୟମ ଲେଖାହେଲା । ଓଡ଼ିଶାର ଧଉଳୀଗିରିରେ ତାଙ୍କଦ୍ୱାରା ଖୋଳା ହୋଇଥିବା ଉପଦେଶ କଥା ଏ ପର୍ଯ୍ୟନ୍ତ ଅଛି ।

ଅଶୋକଙ୍କ ଅମଳରେ ରାଜକର୍ମଚାରୀମାନଙ୍କର ରାଜ୍ୟଶାସନ ଓ ଧର୍ମ-ପ୍ରଚାର--ଏହି ଦୁଇଟି କାର୍ଯ୍ୟ ହେଲା । ଅଶୋକ ନିଜେ ସନ୍ନ୍ୟାସୀ ବେଶରେ ବୁଲି ଧର୍ମ ପ୍ରଚାର କଲେ । ଏହି କାମ ଯେ କେବଳ ଭାରତରେ ହେଲା, ତାହା ନୁହେଁ; ପ୍ରଚାରକମାନେ ଯାଇ ଆଫ୍ରିକା, ଚୀନ, ସିଂହଳ ଓ ବ୍ରହ୍ମ ଦେଶରେ ବୌଦ୍ଧଧର୍ମ ପ୍ରଚାର କରିବାକୁ ଲାଗିଲେ । ନିଜେ ଅଶୋକଙ୍କ ଭାଇ ମହେନ୍ଦ୍ର ସିଂହ ସିଂହଳ ଦେଶରେ ଧର୍ମ ପ୍ରଚାର କରିଥିଲେ ।

ଅଶୋକ ନିଜେ ବୌଦ୍ଧଧର୍ମ ଗ୍ରହଣ କରି ଦେଶ ବିଦେଶରେ ଏହି ଧର୍ମ ପ୍ରଚାର କରିଥିଲେ ସତ୍ୟ; କିନ୍ତୁ ସେ ହିନ୍ଦୁ ବା ଅନ୍ୟ ଧର୍ମର ଲୋକଙ୍କୁ ଘୃଣା କରୁ ନ ଥିଲେ କିମ୍ବା ଧର୍ମଗ୍ରହଣ ପାଇଁ କାହାପ୍ରତି କିଛି ଅତ୍ୟାଚାର କରୁ ନ ଥିଲେ ।

ଅଶୋକ ଏତିକିରେ ସନ୍ତୁଷ୍ଟ ହୋଇ ରହି ନ ଥିଲେ । ସେ ଧର୍ମର ଅର୍ଥ ବୁଝି ଏ ଦେଶରେ ଧର୍ମରାଜ୍ୟ ବା ରାମରାଜ୍ୟ ଗଢ଼ିବାକୁ ଚେଷ୍ଟା କରିଥିଲେ । ପ୍ରଜାଙ୍କ ମଙ୍ଗଳ ଲାଗି ସେ ଯେ କେତେ କାମ କରିଛନ୍ତି, ତାର ସୀମା ନାହିଁ । ତାଙ୍କ ରାଜୁତିରେ ଦେଶ ତମାମ ନୂଆ ନୂଆ ସଡ଼କ ତିଆରି ହୋଇଥିଲା । ବାଟୋଇଙ୍କୁ ବାଟଚଲା ବାଧିବ ବୋଲି ସଡ଼କ ଦୁଇପଟେ ଗଛ ଲଗା ହୋଇ-ଥିଲା । ରହିବା ଲାଗି ବାଟପାଖରେ ଠାଏ ଠାଏ ଚଟିଘର ସବୁ ତୋଳା ହୋଇ-ଥିଲା । ପ୍ରତି ତିନି ମାଇଲ ଅନ୍ତରରେ କୂଅ, ପୋଖରୀ ଖୋଳା ହୋଇଥିଲା । ହଜାର ହଜାର ପାଠଶାଳାରେ ଛାତ୍ରମାନେ ପଢୁଥିଲେ । ଛାତ୍ରମାନଙ୍କୁ ଦରମା ଦେବାକୁ ପଡୁ ନ ଥିଲା । ଦେଶର ଠାଏ ଠାଏ ରୋଗୀଙ୍କ ଚିକିତ୍ସା ପାଇଁ ଡାକ୍ତରଖାନା ବସାଯାଇଥିଲା । ମନୁଷ୍ୟ ଓ ପଶୁମାନଙ୍କ ପାଇଁ ଧର୍ମଶାଳା ମଧ୍ୟ ତୋଳା ହୋଇଥିଲା । ଅଶୋକ ମହାରାଜା ଭାରି ଦାନୀ, ଦୟାଳୁ ଓ ପରି-ଶ୍ରମୀ ଥିଲେ । ତାଙ୍କ ରାଜୁତିରେ ପ୍ରଜାଏ ସୁଖଶାନ୍ତିରେ ଦିନ କାଟୁଥିଲେ ।

Digitized by srujanika@gmail.com

ଏହିପରି ଭାବରେ ୪୨ ବର୍ଷ କାଳ ଦେଶ ଓ ମାନବଜାତି ପାଇଁ ଧନରତ୍ନ ଖର୍ଚ୍ଚ କରି ଶେଷରେ ଅଶୋକ ସନ୍ନ୍ୟାସୀ ହୋଇଗଲେ । ଖ୍ରୀଷ୍ଟପୂର୍ବ ୨୨୬ ଅବ୍ଦରେ ତାଙ୍କର ମୃତ୍ୟୁ ହେଲା ।

## ଖାରବେଳ

ଅଶୋକ ମରିବାର ଚାରି ବର୍ଷ ମଧ୍ୟରେ ତାଙ୍କର ବିଶାଳ ସାମ୍ରାଜ୍ୟ ଖଣ୍ଡ ଖଣ୍ଡ ହୋଇଗଲା । ଅଧୀନସ୍ଥ ରାଜାମାନେ ସ୍ୱାଧୀନ ହୋଇପଡିଲେ । କଳିଙ୍ଗ ବା ଆମ୍ଭମାନଙ୍କ ଉତ୍କଳ ଦେଶ ସେଥିରୁ ଗୋଟିଏ । ସେହି ସମୟରେ ଖାରବେଳ ଓଡିଶାର ରାଜା ଥିଲେ । ନିଜ ବାହୁବଳରେ ସେ ମଗଧ ରାଜ୍ୟରୁ ଅଲଗା ହୋଇ ଏକ ଅଲଗା ସାମ୍ରାଜ୍ୟ ଗଢିବାରେ ଲାଗିଲେ । ତାଙ୍କର ଅମଳରେ ଉତ୍କଳର ଜୟବାନା ଭାରତର ଚାରିଆଡେ ଉଡିଲା । ହିମାଳୟଠାରୁ କୁମାରିକାଯାଏ ଚେର, ଚୋଳ, ପାଣ୍ଡ୍ୟ, ବେରାର, ମହାରାଷ୍ଟ୍ର, ପଞ୍ଜାବ, ମଗଧ, ସମସ୍ତ ଦେଶ ସେ ଜିଣିଥିଲେ । ମଗଧର ବିଖ୍ୟାତ ରାଜା ପୁଷ୍ପମିତ୍ରଙ୍କୁ ସେ ଯୁଦ୍ଧରେ ହଟାଇ ଦେଇଥିଲେ ।

ଭୁବନେଶ୍ୱର ପାଖ ଧଉଳୀ ଗିରି ନିକଟରେ ଖାରବେଳଙ୍କ ରାଜଧାନୀ ଥିଲା । ସେ ବଡ ଧାର୍ମିକ ରାଜା ଥିଲେ । ପ୍ରଜାଙ୍କ ମଙ୍ଗଳ ପାଇଁ, କୃଷିର ଉନ୍ନତି ପାଇଁ ରାଜ୍ୟର ନାନା ସ୍ଥାନରେ ସେ କୂଅ, ପୋଖରୀ ଓ କେନାଲ ସବୁ ଖୋଳାଇଥିଲେ । ତାଙ୍କ ଅମଳରେ ଏ ଦେଶରେ ଜାହାଜରେ ବେପାର ହେଉଥିଲା । ବୁଢା ବୟସରେ ସେ ଖଣ୍ଡଗିରିରେ ସନ୍ନ୍ୟାସୀ ହୋଇ ରହିଥିଲେ । ତାଙ୍କ ରାଜୁତିର ଅନେକ କଥା ଏବେ ମଧ୍ୟ ଖଣ୍ଡଗିରିର ପଥର-ଗୁମ୍ଫାରେ ଲେଖା ରହିଛି ।

## କନିଷ୍କ

ଅଶୋକଙ୍କ ମୃତ୍ୟୁର ପ୍ରାୟ ଶହେ ବର୍ଷ ପରେ ତାଙ୍କ ବଂଶର ପତନ ହେଲା । ଏହି ସମୟରେ ମଧ୍ୟ-ଏସିଆରୁ 'ଶକ' ନାମକ ଏକ ଜାତି ଆସି ଭାରତକୁ ଆକ୍ରମଣ କଲେ । ପ୍ରାୟ ଦୁଇ ଶହ ବର୍ଷ ମଧ୍ୟରେ କେତେକ ଶକ ପାରସ୍ୟ-ଠାରୁ ପଞ୍ଜାବ ଓ କାଶ୍ମୀର ପର୍ଯ୍ୟନ୍ତ ସବୁ ଦେଶ ଜିଣି ଏକ ବଡ ସାମ୍ରାଜ୍ୟ,

Digitized by srujanika@gmail.com

ଗଢ଼ିଲେ । ଏହି ଶକ ରାଜ୍ୟରେ ଜଣେ ବିଖ୍ୟାତ ରାଜା ବାହାରିଲେ — ତାଙ୍କ ନାଁ କନିଷ୍କ ।

କନିଷ୍କ ୭୮ ଖ୍ରୀଷ୍ଟାବ୍ଦରେ ରାଜଗାଦିରେ ବସିଲେ । ପୁରୁଷପୁର ବା ଆଜିକାଲିର ପେଶୋବାର ସହର ତାଙ୍କର ରାଜଧାନୀ ଥିଲା । ସେ ଯେଉଁ ଦିନ ରାଜା ହେଲେ, ସେହି ଦିନଠାରୁ 'ଶକାବ୍ଦ' ବୋଲି ଏକ ଅବ୍ଦ ଆରମ୍ଭ ହେଲା । ତାଙ୍କ ରାଜ୍ୟ ଭିତରେ ତୁର୍କିସ୍ଥାନ ଓ ଆଫଗାନିସ୍ଥାନ ମଧ୍ୟ ମିଶିଥିଲା । ସେ ବୌଦ୍ଧଧର୍ମ ଗ୍ରହଣ କରିଥିଲେ । ବୌଦ୍ଧଧର୍ମର ପ୍ରଚାର ପାଇଁ ସେ ମଧ୍ୟ-ଏସିଆ, ଚୀନ ପ୍ରଭୃତି ଦେଶକୁ ସନ୍ନ୍ୟାସୀମାନଙ୍କୁ ପଠାଇଥିଲେ । ତାଙ୍କଦ୍ୱାରା ବୌଦ୍ଧ-ଧର୍ମର ଅନେକ ଉନ୍ନତି ହୋଇଥିଲା ।

---

## ଗୁପ୍ତ ବଂଶ

ଗୁପ୍ତ ବଂଶର ରାଜାମାନେ ମଗଧରେ ରାଜୁତି କରୁଥିଲେ । କନିଷ୍କ ବଂଶର ପତନ ହେବାର ପ୍ରାୟ ଶହେ ବର୍ଷ ପରେ ଏମାନେ ଖୁବ୍ ପରାକ୍ରମୀ ହୋଇଉଠିଲେ । ଏମାନେ ହିନ୍ଦୁ ଧର୍ମର ବହୁତ ଉନ୍ନତି କରିଥିଲେ । ଏହି ବଂଶର ଦ୍ୱିତୀୟ ରାଜା ସମୁଦ୍ରଗୁପ୍ତ ବଡ ବୀର, ପଣ୍ଡିତ ଓ କବି ଥିଲେ । ସେ ଉତ୍ତରାଖଣ୍ଡ କରି ଦକ୍ଷିଣ-ଭାରତର କେତେକ ରାଜ୍ୟ ଜିଣିଥିଲେ । ତାଙ୍କ ଅନ୍ତେ ତାଙ୍କ ପୁଅ ଚନ୍ଦ୍ରଗୁପ୍ତ 'ବିକ୍ରମାଦିତ୍ୟ' ଉପାଧି ପାଇ ରାଜ୍ୟ ଶାସନ କଲେ । ସେ ପିତାଙ୍କ ପରି ଭାରି ସାହସୀ ଥିଲେ । ଯୁଦ୍ଧରେ ସେ ମାଳବ ଓ ଗୁଜରାଟ ରାଜ୍ୟ ଜିଣିଥିଲେ । ସେ ଶକମାନଙ୍କୁ ଯୁଦ୍ଧରେ ଜିଣି 'ଶକାରି' ଉପାଧି ଗ୍ରହଣ କରିଥିଲେ । ସେ ବଡ ଗୁଣଗ୍ରାହୀ । ତାଙ୍କ ଦରବାରରେ ନଅ ଜଣ କବି ଓ ପଣ୍ଡିତ ଥିଲେ । ସେମାନଙ୍କ ମଧ୍ୟରେ ନଅ ଜଣ ପ୍ରଧାନ । ସେମାନଙ୍କ ନାଁ — କାଳିଦାସ, ବରାହମିହିର, ଘଟକର୍ପର, ଧନ୍ୱନ୍ତରି, କ୍ଷପଣକ, ଶଙ୍କୁ, ଅମରସିଂହ, ବେତାଳଭଟ୍ଟ ଓ ବରରୁଚି । ଏମାନଙ୍କ ମଧ୍ୟରୁ ପ୍ରତ୍ୟେକେ ଗୋଟିଏ ଗୋଟିଏ ରତ୍ନ । ତେଣୁ ଏମାନଙ୍କୁ "ନବରତ୍ନ" କୁହାଯାଉଥିଲା । କାଳିଦାସ ଏମାନଙ୍କ ମଧ୍ୟରେ ସର୍ବଶ୍ରେଷ୍ଠ । ସେ କୁମାରସମ୍ଭବ, ରଘୁବଂଶ, ମେଘଦୂତ, ଶକୁନ୍ତଳା ପ୍ରଭୃତି ଅନେକ ସଂସ୍କୃତ ବହି ଲେଖିଛନ୍ତି । ଅମରସିଂହ 'ଅମରକୋଷ'

Digitized by srujanika@gmail.com

ଲେଖିଛନ୍ତି । ଚୀନ ଦେଶରୁ ସାହୁଆନ ନାମରେ ଜଣେ ଲୋକ ପ୍ରାୟ ଚନ୍ଦ୍ରଗୁପ୍ତଙ୍କ ରାଜତ୍ୱ କାଳ ମଧ୍ୟରେ ଏ ଦେଶରେ ବୌଦ୍ଧ ତୀର୍ଥମାନ ଦେଖିବାକୁ ଆସିଥିଲେ । ସେ ଛଅ ବର୍ଷକାଳ ଏ ଦେଶରେ ନାନା ସ୍ଥାନ ବୁଲି ଦେଖିଥିଲେ । ସେତେବେଳେ ଆମ ଦେଶର ଲୋକେ ସମୁଦ୍ରରେ ଜାହାଜ ଚଳାଇ ବେପାର ବଣିଜ କରୁଥିବା କଥା ସେ ଲେଖିଯାଇଛନ୍ତି ।

---

## ଯଶୋଧର୍ମଦେବ

ଗୁପ୍ତବଂଶର ରାଜାମାନେ ବଡ଼ ଶକ୍ତ ବୁଦ୍ଧିବଳ ଦେଖାଇ ଦେଶ ଶାସନ କରୁଥିଲେ । ସମୁଦ୍ରଗୁପ୍ତ ଓ ଚନ୍ଦ୍ରଗୁପ୍ତ ବିକ୍ରମାଦିତ୍ୟ ପରେ ଗୁପ୍ତ ରାଜତ୍ୱ କାଳ ପରେ ମଧ୍ୟ-ଏସିଆରୁ ଶକମାନେ ଦଳ ଦଳ ହୋଇ ଆସି ଗୁପ୍ତରାଜ୍ୟ ନଷ୍ଟ କରିବାକୁ ଲାଗିଲେ । ଏହି ଶକମାନଙ୍କୁ ହୁନ୍ କୁହାଯାଉଥିଲା । ପଞ୍ଜାବର ଶାକଲ ବା ସିଆଲକୋଟଠାରେ ଏମାନଙ୍କର ରାଜଧାନୀ ଥିଲା । ପୂର୍ବର ଶକମାନେ ବୌଦ୍ଧ ଥିଲେ; ମାତ୍ର ଏମାନେ ହିନ୍ଦୁ ହୋଇଗଲେ । ଏହି ବଂଶର ରାଜା ତୋରମାନ ସୂର୍ଯ୍ୟପୂଜା ଚଳାଇଥିଲେ ଓ ମୂଲତାନ ସହରଠାରେ ଗୋଟିଏ ସୂର୍ଯ୍ୟ-ମନ୍ଦିର ତୋଳାଇଥିଲେ । ଏହାଙ୍କ ଅମଳରେ ହୁନ୍‌ମାନେ ଯୁଦ୍ଧ କରି ମାଳବ ଓ ଗୁଜରାଟ ଜିଣି ନେଇଥିଲେ ।

ତୋରମାନଙ୍କ ପରେ ତାଙ୍କ ପୁଅ ମିହିରକୁଳ ରାଜା ହେଲେ । ସେ ଭାରି ଯୋଦ୍ଧା; କିନ୍ତୁ ବଡ଼ ନିଷ୍ଠୁର ଥିଲେ । ତାଙ୍କ ଅତ୍ୟାଚାରରେ ଦେଶ ଥରିଲା । ତେଣୁ ତାଙ୍କୁ ଜବତ୍ କରିବା ପାଇଁ ହିନ୍ଦୁ ରାଜାମାନେ ଏକମେଳ ହୋଇ ବାହାରିଲେ ।

ସେତେବେଳକୁ ଯଶୋଧର୍ମ ମାଳବର ରାଜା । ସେ ଅସଂଖ୍ୟ ସୈନ୍ୟ ସାମନ୍ତ ନେଇ, କେତେ ରାଜାଙ୍କୁ ମେଳାଇ ମିହିରକୁଳଙ୍କ ସଙ୍ଗେ ଲଢ଼େଇକୁ ବାହାରି ପଡ଼ିଲେ । ଶେଷରେ ମିହିରକୁଳ ହାରିଯାଇ ବନ୍ଦୀ ହେଲେ । ଶକ-ମାନଙ୍କୁ ହଟାଇ ସେ "ଶକାରି" ଉପାଧି ପାଇଲେ । ତାଙ୍କ ଯଶ ଚାରିଆଡ଼େ ବ୍ୟାପିଗଲା । ସେ ବିକ୍ରମାଦିତ୍ୟ ଉପାଧି ମଧ୍ୟ ଗ୍ରହଣ କରିଥିଲେ । ଉଜ୍ଜୟିନୀ-

Digitized by srujanika@gmail.com

ଠାରେ ତାଙ୍କର ରାଜଧାନୀ ଥିଲା । ସେ ଜଣେ ଯୋଦ୍ଧା, ପଣ୍ଡିତ ଓ ଗୁଣଗ୍ରାହୀ ରାଜା ଥିଲେ । ନିଜେ ବଡ ବୋଲି ସେ କେବେ ହେଲେ ଗର୍ବ କରୁ ନ ଥିଲେ । ସେ ଅତି ସରଳ ଭାବରେ ଦିନ କାଟୁଥିଲେ ।

---

## ହର୍ଷବର୍ଦ୍ଧନ

ଯଶୋଧର୍ମ ଦେବଙ୍କ ପରେ ମାଳବର ଆଉ ସେ ଦୀପ୍ତି ରହିଲା ନାହିଁ । ହୂଣମାନେ ସୁବିଧା ଦେଖି ଆକ୍ରମଣ କରିବାକୁ ଲାଗିଲେ । ସେତେବେଳକୁ ଥାନେଶ୍ୱରରେ ପ୍ରଭାକରବର୍ଦ୍ଧନ ରାଜା । ସେ ହୂଣମାନଙ୍କୁ ବାରମ୍ବାର ଯୁଦ୍ଧରେ ହଟାଇବାକୁ ଲାଗିଲେ । ପ୍ରଭାକରଙ୍କର ରାଜ୍ୟବର୍ଦ୍ଧନ ଓ ହର୍ଷବର୍ଦ୍ଧନ ନାମରେ ଦୁଇଟି ପୁଅ ଓ ରାଜ୍ୟଶ୍ରୀ ନାମରେ ଗୋଟିଏ ଝିଅ ଥିଲେ ।

ହର୍ଷବର୍ଦ୍ଧନ ପ୍ରଥମେ ହିନ୍ଦୁ ଥିଲେ । କିନ୍ତୁ ଶେଷକାଳକୁ ବୌଦ୍ଧଧର୍ମ ଗ୍ରହଣ କଲେ । ତାଙ୍କର ଦାତାପଣ ଭାରତର ଘରେଘରେ ଶୁଣାଯାଉଥିଲା । ସେ ପ୍ରତି ପାଞ୍ଚବର୍ଷରେ ଥରେ ପ୍ରୟାଗ ତୀର୍ଥ ଠାରେ ଗୋଟିଏ ବଡ ମେଳା କରି ନିଜ ଭଣ୍ଡାରରେ ଥିବା ସକଳ ସମ୍ପତ୍ତିକୁ ଦୁଃଖୀରଙ୍କୁ ବାଣ୍ଟି ଦେଉଥିଲେ । ଏହିପରି ଉତ୍ସବ ଅତେଇ ମାସ ହେଉଥିଲା । ଉତ୍ସବର ଶେଷ ଦିନ ସେ ଆପଣା ଦେହର ରାଜପୋଷାକ ସୁଦ୍ଧା ବାଣ୍ଟିଦେଇ ନିଜେ ଛିଣ୍ଡା ଓ ମଇଳା ଲୁଗା ଖଣ୍ଡିଏ ପିନ୍ଧି ରହୁଥିଲେ ।

ସେହି ସମୟରେ ରାଜଗୃହ ନିକଟରେ "ନାଳନ୍ଦା" ନାମରେ ଏକ ବିଖ୍ୟାତ ବିଦ୍ୟାଳୟ ଥିଲା । ସେଠାରେ ଦଶହଜାର ଛାତ୍ର ପାଠ ପଢୁଥିଲେ । ଏହି ଛାତ୍ରମାନଙ୍କର ସକଳ ଖର୍ଚ୍ଚ ହର୍ଷ ନିଜ ଭଣ୍ଡାରରୁ ଦେଉଥିଲେ । ସେ ଭାରି ପଣ୍ଡିତ । ତାଙ୍କ ରାଜସଭାରେ ବାଣଭଟ୍ଟ ଜଣେ ପ୍ରଧାନ ପଣ୍ଡିତ ଥିଲେ । ତାଙ୍କର ଅମଳରେ ଚୀନ ଦେଶର ପରିବ୍ରାଜକ ହୁଏନ୍‌ସାଂ ଭାରତକୁ ଆସି ଦଶ ବର୍ଷ କାଳ ରହିଥିଲେ । ସେ ହର୍ଷବର୍ଦ୍ଧନଙ୍କ ରାଜତ୍ୱ ସମ୍ବନ୍ଧରେ ଭାରି ପ୍ରଶଂସା କରିଯାଇଛନ୍ତି ।

Digitized by srujanika@gmail.com

ହର୍ଷବର୍ଦ୍ଧନ ପ୍ରାଚୀନ ଭାରତର ଶେଷ ସ୍ୱାଧୀନ ହିନ୍ଦୁ ସମ୍ରାଟ୍ । ତାଙ୍କ ପରେ ଆଉ ଏତେ ବଡ ସ୍ୱାଧୀନ ସମ୍ରାଟ୍ କେହି ବାହାରିଲେ ନାହିଁ । ସେ ୧୬ ବର୍ଷ ବୟସରେ ୬୦୬ ଖ୍ରୀଷ୍ଟାବ୍ଦରେ ରାଜଗାଦିରେ ବସି ୬୪୭ ଖ୍ରୀଷ୍ଟାବ୍ଦରେ ପ୍ରାଣତ୍ୟାଗ କଲେ । ତାଙ୍କ ପରେ ତାଙ୍କ ସାମ୍ରାଜ୍ୟ ଖଣ୍ଡ ଖଣ୍ଡ ହୋଇଗଲା ।

---

# ହିନ୍ଦୁଧର୍ମର ସଂସ୍କାର

ବୌଦ୍ଧଧର୍ମ ପ୍ରଚାରରେ ହିନ୍ଦୁଧର୍ମ ଲୋପ ପାଇ ନ ଥିଲା । ରାଜାମାନେ ବୌଦ୍ଧଧର୍ମ ଗ୍ରହଣ କରି ଦେଶରେ ପ୍ରଚାର କରିବା ଫଳରେ ଅନେକେ ସେ ଧର୍ମ ଗ୍ରହଣ କରିଥିଲେ । ଯେତେବେଳେ ବୌଦ୍ଧଧର୍ମ ସୁନାମ ହରାଇ ଆସିଲା, ବ୍ରାହ୍ମଣ ପଣ୍ଡିତମାନେ ହିନ୍ଦୁଧର୍ମକୁ ଭଲକରି [ ସଂସ୍କାର କରି ] ଲୋକଙ୍କୁ ବୁଝାଇବାକୁ ଲାଗିଲେ । କେତେ ମହାପୁରୁଷ ବୌଦ୍ଧଧର୍ମ ବିରୋଧରେ ହିନ୍ଦୁଧର୍ମର ସାରକଥା ମାନ ବୁଝାଇବାକୁ ଲାଗିଲେ । ସେମାନଙ୍କ ମଧ୍ୟରେ କୁମାରିଲ ଭଟ୍ଟ ଓ ଶଙ୍କରାଚାର୍ଯ୍ୟ ପ୍ରଧାନ ।

## କୁମାରିଲ ଭଟ୍ଟ—

ତାଙ୍କ ଜନ୍ମସ୍ଥାନ ବିହାରରେ । ସେ ଦାକ୍ଷିଣାତ୍ୟରେ ବୁଲି ହିନ୍ଦୁ ଧର୍ମ ପ୍ରଚାର କରିଥିଲେ । ଅନେକ ଲୋକ ତାଙ୍କ କଥା ବୁଝି ରାଜି ହୋଇ ବୌଦ୍ଧ-ଧର୍ମ ଛାଡି ହିନ୍ଦୁଧର୍ମ ଗ୍ରହଣ କରିଥିଲେ ।

## ଶଙ୍କରାଚାର୍ଯ୍ୟ—

ଶଙ୍କରାଚାର୍ଯ୍ୟଙ୍କୁ ଭାରତବର୍ଷରେ ପାଠ ପଢୁଆ ଲୋକମାନେ ଜାଣନ୍ତି । ପ୍ରତ୍ୟେକ ବ୍ରାହ୍ମଣ ତାଙ୍କ ରଚିତ ଶ୍ଳୋକମାନ ପ୍ରାୟ ପ୍ରତିଦିନ ପାଠ କରନ୍ତି । ସେ ମାଲବାର୍ର ଜଣେ ଗରିବ ବ୍ରାହ୍ମଣର ପୁଅ । ସେ ଶିବଙ୍କର ବଡ ଭକ୍ତ ଥିଲେ । ସେ ମୋଟେ ୩୨ ବର୍ଷ ବଞ୍ଚିଥିଲେ । ଏତେ ଅଳ୍ପଦିନ ବଞ୍ଚି ମଧ୍ୟ ସେ ଭାରତର ଏ ମୁଣ୍ଡରୁ ସେ ମୁଣ୍ଡଯାଏ ବୁଲିଥିଲେ । ବୌଦ୍ଧ ପଣ୍ଡିତମାନଙ୍କୁ ସେ ଏକଲା ତର୍କରେ ଯୁକ୍ତି କରି ହିନ୍ଦୁଧର୍ମ ସପକ୍ଷରେ ଓ ବୌଦ୍ଧ ଧର୍ମ ବିପକ୍ଷରେ

Digitized by srujanika@gmail.com

କହୁଥିଲେ ଯେ, ବୌଦ୍ଧ ପଣ୍ଡିତମାନେ ପରାସ୍ତ ହୋଇ ଯାଉଥିଲେ । କେତେକ ବୌଦ୍ଧ ସନ୍ନ୍ୟାସୀ ଯୁକ୍ତିରେ ନ ପାରି ଆତ୍ମହତ୍ୟା କରୁଥିଲେ । ସେ ହିମାଳୟର କେଦାରନାଥଠାରେ ମଲେ । ଶଙ୍କରାଚାର୍ଯ୍ୟଙ୍କ ଶିଷ୍ୟମାନେ ଭାରତର ସବୁଆଡେ ଶୈବଧର୍ମ ପ୍ରଚାର କଲେ । ଫଳରେ ଅନେକେ ବୌଦ୍ଧଧର୍ମ ଛାଡ଼ି ହିନ୍ଦୁଧର୍ମ ଗ୍ରହଣ କଲେ । ଓଡ଼ିଶାର କେଶରୀ ବଂଶର ରାଜାମାନେ ଶୈବ ଥିଲେ ।

---

## ଉତ୍କଳ ଦେଶ

ଆମ୍ଭେମାନେ ଜାତିରେ ଓଡ଼ିଆ । ଆମ ଘର ଓଡ଼ିଶାରେ । ଓଡ଼ିଆ ଆମର ମାତୃଭାଷା । ଏହି ଓଡ଼ିଶାକୁ ଉତ୍କଳ ମଧ୍ୟ କହନ୍ତି । ଆଜି ଓଡ଼ିଶା କହିଲେ ଲୋକେ ବୁଝନ୍ତି—କଟକ, ପୁରୀ, ବାଲେଶ୍ୱର, ସମ୍ବଲପୁର ଓ ଅନୁଗୁଳ । ଆଗେ ଉତ୍କଳ ଦେଶ ବା ଓଡ଼ିଶା ଏତେ ଛୋଟ ରାଜ୍ୟ ନ ଥିଲା । ଏହା ଉତ୍ତରରେ ଗଙ୍ଗା ନଈଠାରୁ ଦକ୍ଷିଣରେ ଗୋଦାବରୀ ନଈଯାଏ ବ୍ୟାପିଥିଲା । ଏହା କାହିଁକି ଏତେ ଛୋଟ ହୋଇଛି, ତାହା ତୁମ୍ଭେମାନେ ପରେ ଜାଣିବ । ଆମ ମାତୃଭୂମି ଉତ୍କଳର ନାଁ ପୂର୍ବେ କଳିଙ୍ଗ ଥିଲା । କଳିଙ୍ଗ ବିଶାଳ ରାଜ୍ୟ । ଭାରତରେ ଉତ୍କଳ ଧନରେ, ବିଦ୍ୟାରେ, ବୀରପଣିଆରେ ବିଖ୍ୟାତ ଥିଲା ।

ଉତ୍କଳର ଅର୍ଥ ଉତ୍କଳିଙ୍ଗ ବା ଉତ୍ତର-କଳିଙ୍ଗ । କଳିଙ୍ଗ ରାଜ୍ୟ ତିନି ଭାଗରେ ବିଭକ୍ତ ହୋଇଥିଲା—ଦକ୍ଷିଣ-କଳିଙ୍ଗ, ମଧ୍ୟ-କଳିଙ୍ଗ ଓ ଉତ୍ତର-କଳିଙ୍ଗ । ଉତ୍ତର-କଳିଙ୍ଗ ଦକ୍ଷିଣରେ ଋଷିକୁଲ୍ୟା ନଈଠାରୁ ଉତ୍ତରରେ ଗଙ୍ଗା ନଈ ଯାଏ ଥିଲା ।

ଅନେକ ଦିନ ତଳେ ଏହି ଉତ୍କଳଖଣ୍ଡରେ ଉଡ୍ର ନାମରେ ଏକ ଜାତି ବାସ କରୁଥିଲେ । ସେମାନେ ଆର୍ଯ୍ୟ । ସେମାନେ ଆଉ କେହି ନୁହନ୍ତି—ଆଜିକାଲି ଆମ ଦେଶରେ ଯେଉଁ ଚଷା ଓ ଖଣ୍ଡାୟତ ବାସ କରୁଛନ୍ତି, ସେମାନଙ୍କର ପୂର୍ବ ବଂଶଧର ଏହି ଉଡ୍ରମାନେ । ଉଡ୍ରମାନଙ୍କୁ ଓଡ ବା ଓଡ଼ିଆ

Digitized by srujanika@gmail.com

କାହାନ୍ତି । କେବଳ ଖୋରଧା ଅଞ୍ଚଳରେ ଚଷା ଓ ଖଣ୍ଡାୟତମାନେ ନିଜକୁ ଓଡ଼ିଆ ବୋଲି ପରିଚୟ ଦଅନ୍ତି । ପୂର୍ବେ ଉତ୍କଳମାନେ ଭଲ ସାହସୀ ଓ ଯୋଦ୍ଧା ଥିଲେ । ଏହି ଉତ୍କଳ ବା ଓଡ଼ିଆଙ୍କ ସାହସ ଓ ବୀରପଣିଆ ଯୋଗୁଁ ଉତ୍କଳର ରାଜାମାନେ ଅନେକ ରାଜ୍ୟ ଜିଣି ପାରିଥିଲେ । ବଡ ବଡ ନାମଜାଦା ରାଜାଙ୍କୁ ମୁହଁରେ ହଟାଇ ଦେଇଥିଲେ ଓ ନିଜ ରାଜ୍ୟର ସ୍ୱାଧୀନତା ଅନେକ କାଳ ପର୍ଯ୍ୟନ୍ତ ରକ୍ଷି ପାରିଥିଲେ ବୋଲି ତାଙ୍କର ନାଁ ଅନୁସାରେ ଏ ଦେଶର ନାଁ ଓଡ଼ିଶା ହେଲା ।

---

# କେଶରୀ ବଂଶ

**ଜନମେଜୟ—**

ବିନ୍ଧ୍ୟ ପର୍ବତ ଓ ମହାନଦୀ ମଧ୍ୟରେ ଦକ୍ଷିଣ କୋଶଳ ବୋଲି ଏକ ବଡ ରାଜ୍ୟ ଥିଲା । ମୁର୍ଦ୍ଧଶ୍ୱରଙ୍କ ବଂଶଧରମାନେ ଏହିଠାରେ ରାଜୁତି କରୁଥିଲେ । ଅନେକ ଦିନ ପରେ ଏହି ବଂଶ କୋଶଳ ରାଜ୍ୟକୁ ହରାଇ ବସିଲେ । ଜନମେଜୟ ନାମରେ ଏହି ବଂଶର ଜଣେ ରାଜା ପ୍ରଥମେ ସମ୍ବଲପୁର ଅଧିକାର କରି ରାଜା ହେଲେ । ନିଜ ବାହୁବଳରେ ସେ ଆସ୍ତେ ଆସ୍ତେ ସମସ୍ତ କଳିଙ୍ଗ ଜିଣି ନେଲେ । ଚୌଦ୍ୱାର ତାଙ୍କର ରାଜଧାନୀ ଥିଲା । "ସେ କେଶରୀ" ଉପାଧି ଗ୍ରହଣ କରିଥିଲେ । ଜନମେଜୟ କେଶରୀ ବଂଶର ପ୍ରଥମ ରାଜା ।

**ଯଯାତି—**

ଯଯାତି ଜନମେଜୟଙ୍କ ପୁଅ । ଦେବତା ଓ ବ୍ରାହ୍ମଣଙ୍କଠାରେ ତାଙ୍କର ଭାରି ଭକ୍ତି ଥିଲା । ସେ ବୈତରଣୀ ନଦୀ କୂଳରେ ଯାଜପୁରଠାରେ ଦଶାଶ୍ୱମେଧ ଯଜ୍ଞ କରିଥିଲେ । ସେ କାନ୍ୟକୁବ୍ଜରୁ ଦଶ ସହସ୍ର ଭଲ ବ୍ରାହ୍ମଣ ଅଣାଇ ସେମାନଙ୍କ ପାଇଁ ଏ ଦେଶରେ ଜମି ବାଡି ଖଞ୍ଜି ଦେଇଥିଲେ । ଏହି ଦଶ ସହସ୍ର ବ୍ରାହ୍ମଣ ସେହି ଯଜ୍ଞରେ ଯୋଗ ଦେଇଥିଲେ । ଯଜ୍ଞ ସ୍ଥାନରେ ଗୋଟିଏ ନଗର ତୋଳି ସେଠାକୁ ରାଜଧାନୀ ଉଠାଇ ଆଣିଲେ ।

Digitized by srujanika@gmail.com

ସେ ଶିବଙ୍କର ଭକ୍ତ ଥିଲେ । ସେ ଭୁବନେଶ୍ୱରଠାରେ ଲିଙ୍ଗରାଜଙ୍କ ଦେଉଳର ନିଅଁ ପକାଇଥିଲେ । ପୁରୀରେ ଜଗନ୍ନାଥଙ୍କ ପାଇଁ ଗୋଟିଏ ନୂଆ ଦେଉଳ ତୋଳାଥିଲେ ଓ ତାଙ୍କର ସେବାପୂଜା ପାଇଁ ଜମିବାଡ଼ ଛାଡ଼ି ଦେଇଥିଲେ ।

ଯଯାତି ଗୋଟିଏ ନୂଆ ସାଲ ବା ଅଙ୍କ ଚଳାଇଥିଲେ । ତାହା ପ୍ରତି-ବର୍ଷ ଭାଦ୍ର ଶୁକ୍ଳ ଦ୍ୱାଦଶୀ ଦିନଠାରୁ ଗଣା ହୁଏ । ଏହି ଦିନକୁ ସୁନିଆଁ କହନ୍ତି । ଓଡ଼ିଶାରେ ଜମିଦାରମାନେ ଏହି ସୁନିଆଁ ଦିନ ବର୍ଷର ପ୍ରଥମ ଦିନ ଧରି କାଗଜପତ୍ର କରନ୍ତି ।

## ଲଲାଟେନ୍ଦୁ କେଶରୀ—

ସେ ଭୁବନେଶ୍ୱରଠାରେ ଲିଙ୍ଗରାଜଙ୍କ ବଡ଼ ଦେଉଳ ତୋଳା ଶେଷ କରାଇଥିଲେ । ଏହି ମନ୍ଦିରର ଉଚ୍ଚତା ୧୬୦ ଫୁଟ । ଏହି ଦେଉଳରେ ମୂଳରୁ ଚୂଳ ପର୍ଯ୍ୟନ୍ତ ଏପରି ସୁନ୍ଦର କାମ ହୋଇଛି ଯେ, ଦେଶବିଦେଶରୁ ଅନେକ ଯାତ୍ରୀ ଦେଖିବାକୁ ଆସନ୍ତି ଓ ଭାରି ପ୍ରଶଂସା କରି ଯାନ୍ତି । ଲଲାଟଙ୍କ ରାଜୁତି ବେଳେ ଚୀନରୁ ହୁଏନ୍‌ସାଂ ଉତ୍କଳକୁ ବୁଲି ଆସିଥିଲେ ।

## ବସନ୍ତ କେଶରୀ—

ସେ ଯାଜପୁରଠାରେ ବାସୁଦେବନାଥଙ୍କ ମନ୍ଦିର ତୋଳାଇଥିଲେ ଓ ଭୁବନେଶ୍ୱରର ବିନ୍ଦୁ ସରୋବର ଖୋଳାଇଥିଲେ ।

## ନୃପ କେଶରୀ—

ସେ କଟକ ନଗର ବସାଇଥିଲେ ଓ ବାରାଣସୀରେ ଦୁର୍ଗ ତୋଳାଇ-ଥିଲେ ।

## ମରକତ କେଶରୀ—

କଟକ ସହରର ଉତ୍ତରପଟେ ମହାନଦୀ ଓ କାଠଯୋଡ଼ି ନଈ ଘେରି ରହିଛନ୍ତି । କଟକର ଉତ୍ତର, ପଶ୍ଚିମ ଓ ଦକ୍ଷିଣ ପଟରେ ଯେଉଁ ପଥର ବନ୍ଧ

Digitized by srujanika@gmail.com

ତିଆରି ହୋଇଛି, ତାହା ଏହି ମରକତ କେଶରୀ କରାଇଥିଲେ । ଏହି ପଥର ବନ୍ଧ ହଜାର ବର୍ଷରେ ବନ୍ଧ ହୋଇ ମଧ୍ୟ ମଜବୁତ ହୋଇ ରହିଛି । ଏହି ବନ୍ଧ ପଡ଼ି ନ ଥିଲେ ଅନେକ ଧନୁ କଟକ ନଈଗର୍ଭରେ ମିଶି ଯାଆନ୍ତାଣି ।

**ମତ୍ସ୍ୟକେଶରୀ—**

ପୁରୀ ନିକଟରେ ଜଗନ୍ନାଥ ସଡ଼କରେ ଅଠର ନଳା ଏହାଙ୍କ କୀର୍ତ୍ତି ।

**ସୁବର୍ଣ୍ଣ କେଶରୀ —**

କେଶରୀ ବଂଶରେ ୪୪ ଜଣ ରାଜା ରାଜୁତି କରିଛନ୍ତି । ସୁବର୍ଣ୍ଣ କେଶରୀ ଶେଷ ରାଜା । ତାଙ୍କର ପୁଅ ନ ଥିଲା । ନନ୍ଦିକା ତାଙ୍କର ଏକମାତ୍ର ଝିଅ । ଋଷିକୁଲ୍ୟା ନଈଠାରୁ ଗୋଦାବରୀ ନଈଯାଏ ଥିବା ରାଜ୍ୟରେ ଗଙ୍ଗବଂଶର ରାଜା ରାଜରାଜ ଦେବ ରାଜୁତି କରୁଥିଲେ । ତାଙ୍କ ପୁଅ ଚୋଳଗଙ୍ଗ ଆସି ତାଙ୍କୁ କଟକଠାରେ ଯୁଦ୍ଧରେ ପରାସ୍ତ କରି ନିଜେ ରାଜା ହେଲେ ।

---

# ମହମ୍ମଦ ଓ ମୁସଲମାନ ଧର୍ମ

ଭାରତର ପଶ୍ଚିମରେ ଆରବ ବୋଲି ଗୋଟିଏ ଦେଶ ଅଛି । ସେ ଦେଶଟି ମରୁଭୂମିରେ ପୂର୍ଣ୍ଣ । ସେହି ମରୁଭୂମି ଉପରେ ଆଦୌ ବର୍ଷା ହୁଏ ନାହିଁ । ପୂର୍ବେ ସେଠାରେ ଲୋକେ ଘରଦ୍ୱାର କରି ଏକ ସ୍ଥାନରେ ରହୁ ନ ଥିଲେ । ଘୋଡ଼ା, ଓଟ ପ୍ରଭୃତି ପଶୁ ପାଳିବା ସେମାନଙ୍କର ଜୀବିକା ଥିଲା । ପଶୁମାନଙ୍କୁ ଧରି ସେମାନେ ନାନା ଆଡ଼େ ବୁଲି ବୁଲୁଥିଲେ ।

ଆଜକୁ ପ୍ରାୟ ତେରଶହ ବର୍ଷ ତଳେ ସେହି ଆରବ ଦେଶର ମକ୍କା ସହରରେ ଜଣେ ନେତା ବାହାରିଥିଲେ । ତାଙ୍କ ନାଁ ମହମ୍ମଦ । ମହମ୍ମଦ ଗୋଟିଏ ଦରିଦ୍ର ଘରେ ଜନ୍ମ ହୋଇଥିଲେ । ଜନ୍ମ ହେବାର ଛଅ ମାସ ଆଗରୁ ତାଙ୍କ ପିତା ମରିଯାଇଥିଲେ ଏବଂ ତାଙ୍କୁ ଛ ବର୍ଷ ବୟସ ହେଲା ବେଳକୁ

Digitized by srujanika@gmail.com

ମାଆଙ୍କର କାଳ ହୋଇଗଲା । ସେ ପିଲାଦିନେ ବଡ କଷ୍ଟରେ ପରଘରରେ ଘୋଡା, ଓଟ, ମେଣ୍ଢା ଜଗି ଚଳିଲେ ।

ସେହି ସମୟରେ ଆରବ ଦେଶର ଲୋକଙ୍କ ଅବସ୍ଥା ବଡ କଦର୍ଯ୍ୟ ଥିଲା । କୌଣସ ଗୋଟିଏ ଧର୍ମରେ ବିଶ୍ୱାସରେ କେହି ଚଳୁ ନ ଥିଲେ । ଅନେକେ ପିତୁଳା ପୂଜା କରୁଥିଲେ । ଆପଣା ଭିତରେ କଳି ଲଗାଇ କେତେ କେତେ ହଣାହଣି ହୋଇ ମରୁଥିଲେ । ନାନାପ୍ରକାର ପଶୁ ପରି ସେମାନେ ଚଳୁଥିଲେ । ସେମାନେ ବଡ ନିଷ୍ଠୁର ଥିଲେ ।

ମହମ୍ମଦ ପିଲାଦିନେ ଏହିପରି ଲୋକଙ୍କ ଭିତରେ ବଢ଼ି ଆସିଲେ; ମାତ୍ର ତାଙ୍କ ପ୍ରକୃତି ଅଲଗା ଥିଲା । ଲୋକଙ୍କ ମନ୍ଦ ଆଚରଣ ଓ କୁରୀତି ତାଙ୍କୁ ଭଲ ଲାଗୁ ନ ଥିଲା । ବୟସ ବଢିବା ସଙ୍ଗେ ତାଙ୍କ ହୃଦୟରେ ଧର୍ମବିଶ୍ୱାସ ବଢିଲା । ମକ୍କା ସହର ପାଖରେ ଥିବା ଏକ ପର୍ବତ ଗୁହାରେ ସେ କେତେ ଦିନ ଯାଏ ଏକୁଟିଆ ଚିନ୍ତା କଲେ ।

ପର୍ବତ ଗୁହାରୁ ଆସିଲା ପରେ ମହମ୍ମଦ ଲୋକଙ୍କୁ ଉପଦେଶ ଦେଇ ଗୋଟିଏ ନୂଆ ଧର୍ମ ପ୍ରଚାର କଲେ । ସେ କହି ବୁଲିଲେ ଯେ, ଭଗବାନ ଏକ, ତାଙ୍କ ଛଡା ଅଉ କାହାକୁ ପୂଜା କରିବା ଉଚିତ ନୁହେଁ । ପ୍ରତିମା ପୂଜା କରିବା ଅନ୍ୟାୟ । ମିଛ କହିଲେ, ମଦ ପିଇଲେ, ଜୀବ ହିଂସା କଲେ ଭଗବାନ ଅସନ୍ତୁଷ୍ଟ ହୁଅନ୍ତି । ଭଗବାନ ତାଙ୍କୁ ଦୂତରୂପେ ଏହି କଥା ପ୍ରଚାର କରିବାକୁ ପଠାଇଛନ୍ତି ।

ମହମ୍ମଦଙ୍କ ଏ କଥାରେ ସେଠା ଲୋକେ ପ୍ରଥମେ ବିଶ୍ୱାସ ନ କରି ତାଙ୍କୁ ବିଧର୍ମୀ ବୋଲି ଭାବି ମାରିବାକୁ ବାହାରିଲେ । ସେ ଭୟରେ ମକ୍କା ଛାଡି ମଦିନା ସହରକୁ ଚାଲିଗଲେ । ଏହି ଘଟନା ୬୨୨ ଖ୍ରୀଷ୍ଟାବ୍ଦରେ ଘଟିଥିଲା । ମଦିନାରେ ଲୋକେ ତାଙ୍କୁ ମାନିଲେ । ଯେଉଁମାନେ ମାନିଲେ ଏବଂ ଯେଉଁମାନେ ମାନିଲେ ନାହିଁ, ସେହି ଦୁଇଦଳଙ୍କ ଭିତରେ ଯୁଦ୍ଧ ଚାଲିଲା । ଶେଷରେ ମହମ୍ମଦଙ୍କ ଦଳ ଜିଣିଲେ । ମହମ୍ମଦ ଯେଉଁ ଧର୍ମ ପ୍ରଚାର କଲେ, ତାକୁ ଇସଲାମ ଧର୍ମ କହନ୍ତି । ସେ ଧର୍ମକୁ ଯେଉଁମାନେ ମାନିଲେ, ସେମାନଙ୍କୁ ମୁସଲମାନ କୁହାଗଲା ।

ମହମ୍ମଦ ୬୩୨ ଖ୍ରୀଷ୍ଟାବ୍ଦରେ ପ୍ରାଣତ୍ୟାଗ କଲେ । ତାଙ୍କ ପରେ ତାଙ୍କ ଶିଷ୍ୟମାନେ ଅନ୍ୟ ଦେଶକୁ ଯାଇ ନିଜ ଦଳ ବଢାଇଲେ ।

Digitized by srujanika@gmail.com

# ମୁସଲମାନମାନଙ୍କର ଭାରତ ଆକ୍ରମଣ

ମହମ୍ମଦ ମରିଗଲେ; ମାତ୍ର ମୁସଲମାନଙ୍କ ବଳ ଦିନକୁ ଦିନ ବଢ଼ିଲା। ସେମାନେ ତୁର୍କି, ପାରସ୍ୟ, ଆଫଗାନିସ୍ଥାନ ପ୍ରଭୃତି ଦେଶ ଜିଣିଲେ । ଆଗେ ସେହି ସବୁ ଦେଶରେ ବୌଦ୍ଧ ଧର୍ମ ଚଳୁଥିଲା । ଆରବ ଦେଶର ବାଗଦାଦଠାରେ ମୁସଲମାନଙ୍କ ଖଲିଫା ରାଜା ହୋଇ ରାଜ୍ୟ ଶାସନ କଲେ ।

ଭାରତ ପରି ଧନଜନପୂର୍ଣ୍ଣ ଦେଶ ପୃଥିବୀରେ ଆଉ ନାହିଁ । ଏଠାରେ ନଈ, ପର୍ବତ, ଫୁଲ, ଫଳ, ଫସଲ କଥା ଶୁଣିଲେ ଅନ୍ୟ ଦେଶର ଲୋକେ ଆଶ୍ଚର୍ଯ୍ୟ ହୁଅନ୍ତି । ମୁସଲମାନମାନେ ଏ ଦେଶ କଥା ଶୁଣି କିପରି ଏଠାକୁ ଆସିବେ, ଏଥିପାଇଁ ନାନା ବାଟ ଖୋଜୁଥିଲେ । ସେତେବେଳେ ଭାରତବର୍ଷକୁ ଆସିବା ପାଇଁ ଖାଇବର ଗିରିପଥ ଛଡ଼ା ଅନ୍ୟ ବାଟ ନ ଥିଲା । ସେହି ବାଟେ ସେମାନେ ଭାରତରେ ପଶି ରାଜ୍ୟ ଜିଣିବା ପାଇଁ ହିନ୍ଦୁମାନଙ୍କ ସହିତ ବହୁତ ଯୁଦ୍ଧ କରିଥିଲେ । ମହାଲିବ ବୋଲି ଜଣେ ମୁସଲମାନ ସର୍ବପ୍ରଥମେ ଭାରତବର୍ଷ ଆକ୍ରମଣ କଲେ ।

ଖାଇବର ବାଟେ ମୁସଲମାନମାନେ ଭାରତକୁ ଆସିଲା ଆଗରୁ ଜଣେ ମୁସଲମାନ ସେନାପତି ସିନ୍ଧୁ ଦେଶ ଆକ୍ରମଣ କରି ତାକୁ ଅଧିକାର କରି ନେଇଥିଲେ । ୭୧୨ ଖ୍ରୀଷ୍ଟାବ୍ଦରେ ପାରସ୍ୟ ଦେଶର ଏକ ବେପାରୀ ଜାହାଜ ସିନ୍ଧୁ ଦେଶର ସମୁଦ୍ର କୂଳରେ ଆସି ପହଞ୍ଚିଲା । ଦାହିର ବୋଲି ଜଣେ ବ୍ରାହ୍ମଣ ସେତେବେଳେ ସିନ୍ଧୁ ଦେଶର ରାଜା ଥିଲେ । ଦେବଲ ନାମକ ଏକ ସହର ପାଖେ ସିନ୍ଧୁ ଦେଶର କେତେ ଲୋକ ସେହି ବିଦେଶୀ ଜାହାଜକୁ ଲୁଟି କରି ନେବାରୁ ପାରସ୍ୟର ରାଜା ଦାହିରଙ୍କଠାରୁ କ୍ଷତିପୂରଣ ଦାବୀ କରିବା ପାଇଁ କାସିମ ବୋଲି ଜଣେ ସେନାପତିଙ୍କୁ ପଠାଇଲେ । ଦାହିର ମୁସଲମାନଙ୍କ ସହିତ ଯୁଦ୍ଧ କରି ଦୁଇ ଥର ଜିଣିଲେ । ତୃତୀୟ ଥର ବେଳକୁ ଯୁଦ୍ଧଭୂମିରେ ତାଙ୍କର ମୃତ୍ୟୁ ହେଲା । ତାଙ୍କ ପରେ ତାଙ୍କ ରାଣୀ କେତେ ଦିନ ଯୁଦ୍ଧ ଚଳାଇଥିଲେ । ଗଡର ନାରୀମାନେ ମୁସଲମାନଙ୍କୁ ବାଧା ଦେଇ-

Digitized by srujanika@gmail.com

ଥିଲେ । ଶେଷରେ କାଶମଙ୍କର ଜୟ ହେଲା । ସିନ୍ଧୁ ଦେଶ ମୁସଲମାନଙ୍କ ହାତକୁ ଗଲା; ମାତ୍ର ବେଶୀ ଦିନ ତାହା ସେମାନେ ଭୋଗ କରିପାରି ନ ଥିଲେ । ଏହି ଘଟଣାଠାରୁ ଦୁଇ ଶହ ବର୍ଷ ଯାଏ ମୁସଲମାନମାନେ ଆଉ ଏ ଦେଶ ଜୟ କରିବାକୁ ବେଶୀ କିଛି ଚେଷ୍ଟା କରି ନାହାନ୍ତି ।

---

## ସାବକ୍ତଗିନ

ତୁର୍କିମାନେ ପ୍ରଥମେ ଆଫଗାନିସ୍ଥାନରେ ଗୋଟିଏ ରାଜ୍ୟ ଗଢିଥିଲେ । ସେହି ରାଜ୍ୟକୁ ଗଜନୀ ରାଜ୍ୟ କହନ୍ତି । ଏହି ଗଜନୀ ରାଜାମାନଙ୍କ ଅମଳରୁ ଭାରତବର୍ଷରେ ମୁସଲମାନ ରାଜତ୍ୱ ଆରମ୍ଭ ହେଲା ।

ଗଜନୀ ରାଜା ଆଲପ୍ତଗିନଙ୍କର ସାବକ୍ତଗିନ ବୋଲି ଜଣେ ଗୋଲାମ ଥିଲା । ଗୋଲାମ ହେଲେ କଅଣ ହେଲା, ସେ ବଡ ବୀର ଓ ଦୟାଳୁ । ଥରେ ସେ ଘୋଡାରେ ଚଢି ଏକ ଜଙ୍ଗଲ ଭିତରେ ଯାଉଛନ୍ତି, ଗୋଟିଏ ହରିଣ ଛୁଆ ଦେଖିଲେ । ହରିଣ ଛୁଆଟିକୁ ସେ ବାନ୍ଧି ଘୋଡାରେ ଲଦି ନେଲାବେଳକୁ ଫେରି ଚାହିଁଲେ, ଅଳ୍ପ ଦୂରରେ ଛୁଆଟିର ମାଆ ତାଙ୍କ ଆଡକୁ ଚାହିଁ ରହିଛି । ହରିଣୀଟିର ସେ ବିକଳ ଚାହାଣି ଦେଖି ତାଙ୍କ ହୃଦୟରେ ଦୟା ହେଲା । ସେ ସେ ଛୁଆଟିକୁ ଫିଟାଇ ଛାଡିଦେଲେ । ହରିଣୀଟି ପିଲାକୁ ଫେରିପାଇ ତାଙ୍କ ଆଡକୁ ବୁଲି ବୁଲି ଚାହିଁ ଚାହିଁ ବଣ ଭିତରେ ପଶିଗଲା । କଥା ଅଛି, ସାବକ୍ତଗିନ ସେହି ଦିନ ରାତିରେ ଗୋଟିଏ ସ୍ୱପ୍ନ ଦେଖିଲେ ଯେ, ଜଣେ ଦିବ୍ୟ ପୁରୁଷ ତାଙ୍କ ଆଗରେ ଠିଆ ହୋଇ କହୁଛନ୍ତି, "ତୁମର ଏ ଦୟା ଦେଖି ଭଗବାନ ଖୁସି ହୋଇଛନ୍ତି । ନିକଟରେ ତୁମେ ଗଜନୀ ସିଂହାସନରେ ବସିବ । ମନେ ରଖ, ଆଜ ଏହି ପଶୁଟିକୁ ଯେପରି ଦୟା ଦେଖାଇଲ, ରଜା ହେଲା ପରେ ତାହା ଭୁଲିବ ନାହିଁ । ପ୍ରଜାମାନଙ୍କୁ ସୁଖରେ ପାଳିବ ।"

ଏହି ଘଟଣାର କିଛି ଦିନ ପରେ ସାବକ୍ତଗିନଙ୍କ ଭାଗ୍ୟ ଫିଟିଲା । ରାଜା ଆଲପ୍ତଗିନ ତାଙ୍କ ଗୁଣରେ ଖୁସି ହୋଇ ରାଜ୍ୟର ବଡ ପାହ୍ୟାରେ ବୋଖାଇ-

Digitized by srujanika@gmail.com

ଦେଲେ । କିଛି ଦିନ ପରେ ନିଜ ଝିଅକୁ ତାଙ୍କ ସହିତ ବାହା କରାଇ ଦେଲେ । ଆଲପ୍ତଗିନ ମଲା ପରେ ସାବକ୍ତଗିନ ଗଜନୀର ରାଜା ହେଲେ ।

ଏହି ସମୟରେ ପଞ୍ଜାବର ଲାହୋରଠାରେ ଜୟପାଳ ବୋଲି ଜଣେ ରାଜା ରାଜପଣ କରୁଥାନ୍ତି । ସାବକ୍ତଗିନ ରାଜା ହୋଇ ଭାରତକୁ ଆସିବା ପାଇଁ ଉପାୟ ଖୋଜୁଥିଲେ । ଜୟପାଳ ଏହା ଜାଣିପାରି ତାଙ୍କୁ ଦବାଇବା ପାଇଁ ସୈନ୍ୟ ସାମନ୍ତ ଧରି ଗଜନୀ ରାଜ୍ୟ ଆଡକୁ ଗଲେ । କେତେ ଥର ଘୋର ଯୁଦ୍ଧ ହେଲା । ଶେଷରେ ଜୟପାଳ ଶତ୍ରୁ ଦ୍ୱାରା ବନ୍ଦୀ ହେଲେ । ସାବକ୍ତଗିନଙ୍କୁ କେତୋଟି ଦୁର୍ଗ ଏବଂ ଟଙ୍କା-ପଇସା ଦେବେ ବୋଲି ଚୁକ୍ତି କରି ଖଲାସ ହୋଇ ଆସିଲେ । କିନ୍ତୁ ଘରକୁ ଫେରିଆସିଲା ପରେ ତାହା ଦେବାକୁ ଆଉ ମନ୍ଦିଲେ ନାହିଁ । ଏହି ରାଗରେ ସାବକ୍ତଗିନ ପଞ୍ଜାବ ରାଜ୍ୟ ଆକ୍ରମଣ କରି କେତେକ ଅଞ୍ଚଳ ନିଜ ରାଜ୍ୟରେ ମିଶାଇନେଲେ । ସେହି ଦିନୁ ଭାରତବର୍ଷକୁ ମୁସଲମାନମାନଙ୍କର ଯିବା ଆସିବା ଆରମ୍ଭ ହେଲା ।

---

## ମାହ୍ମୁଦ

ମାହ୍ମୁଦ ସାବକ୍ତଗିନଙ୍କ ପୁଅ । ପିତାଙ୍କ ମୃତ୍ୟୁ ପରେ ସେ ଗଜନୀର ରାଜା ହୋଇ ପ୍ରଥମେ ଭାରତ ଆକ୍ରମଣ କରିବାକୁ ବାହାରିଲେ । ସେ ବଡ଼ ନିଷ୍ଠୁର ଓ ଧନଲୋଭୀ ଥିଲେ । କେବଳ ଧନଲୋଭରେ ସେ ଭାରତବର୍ଷକୁ ୧୭ ଥର ଆକ୍ରମଣ କରି ଲକ୍ଷ ଲକ୍ଷ ନିର୍ଦ୍ଦୋଷ ଲୋକଙ୍କୁ ହାଣିଥିଲେ ।

ଆଗେ ଭାରତବର୍ଷ ଓ ଇଉରୋପ ଭିତରେ ବେପାରବାଣିଜ୍ୟ ଚାଲୁଥିଲା । ବେପାରୀମାନେ ଆଫଗାନିସ୍ଥାନ ଓ ପାରସ୍ୟ ଦେଇକରି ଯିବା ଆସିବା କରୁଥିଲେ । ମାହ୍ମୁଦ ପିଲାଦିନେ ବେପାରୀଦଳଙ୍କ ସଙ୍ଗେ ମିଶି ଭାରତର ଧନଦଉଲତ କଥା ଶୁଣିଥିଲେ । ରାଜା ହେଲାମାତ୍ରେ ସେ ଭାରତକୁ ଆସିଲେ ।

ମାହ୍ମୁଦଙ୍କ ଆକ୍ରମଣରେ ଭାରତ ଛାରଖାର ହୋଇପଡିଲା । ସେ ହଜାର ହଜାର ଦେଉଳ ଭାଙ୍ଗି, ଗାଁଗଣ୍ଡା ପୋଡି ଲୋକଙ୍କୁ ବଳେ ମୁସଲମାନ୍ କରି ରାଜ୍ୟ ଲୁଟି କରୁଥିଲେ । ତୀର୍ଥସ୍ଥାନ ମଥୁରା ସହରର ସବୁ ଦେଉଳ

Digitized by srujanika@gmail.com

ଭାଙ୍ଗି ଦେଉଥିଲେ । ଯେଉଁମାନେ ତାଙ୍କୁ ମାନୁ ନ ଥିଲେ, ସେମାନଙ୍କୁ ହାଣି ଦେଉଥିଲେ ବା ବନ୍ଦୀ କରି ନେଇ ଯାଉଥିଲେ । ଶେଷଥର ସେ ଗୁଜୁରାଟରେ ସୋମନାଥ ଦେଉଳକୁ ଆକ୍ରମଣ କରି ଦେବମୂର୍ତ୍ତି ଭାଙ୍ଗି ଅସଂଖ୍ୟ ଧନରତ୍ନ ବୋହି ନେଇଥିଲେ । ସେଠାର ପଣ୍ଡାମାନେ ତାଙ୍କ ସହିତ ଅନେକ ଯୁଦ୍ଧ କରିଥିଲେ ।

ମାହାମୁଦ ଅନେକ ରାଜ୍ୟ ଜିଣିଥିଲେ ସତ; ମାତ୍ର ସେ ସବୁ ରାଜ୍ୟକୁ ଶାସନ କରିପାରୁ ନ ଥିଲେ । ଥରେ ଦଳେ ଖଣ୍ଡ ରାଜ୍ୟରେ ପଶି ବେପାରୀ-ମାନଙ୍କ ଧନରତ୍ନ ବୋହିନେଲେ । ଜଣେ ବେପାରୀର ବୁଢ଼ୀ ମାଆ ଆସି ତାଙ୍କ ପାଖେ ଦୁଃଖ ଜଣାଇବାରୁ ସେ କହିଲେ, "ତୁମେ ଯେଉଁ ସ୍ଥାନର ଘଟଣା କହୁଛ, ତାହା ଏଠାରୁ ଅନେକ ଦୂର । ମୁଁ ଏତେ ଦୂରରୁ ସମସ୍ତଙ୍କୁ ବା କପରି ଶାସନ କରିବି ?" ତାହା ଶୁଣି ସେ ବୁଢ଼ୀଟି କହିଲା, "ଆପଣଙ୍କର ଯେବେ ଏତେ ଦେଶ ବୁଝିବାକୁ ବଳ ନାହିଁ, ତେବେ ଏତେ ଦେଶ ଅଧିକାର କରି ରଖୁଛନ୍ତି କାହିଁକି ? ଏଥିପାଇଁ କଣ ଆପଣ ଈଶ୍ବରଙ୍କ ପାଖେ ଦାୟୀ ହେବେ ନାହିଁ ?" ସାମାନ୍ୟ ଜଣେ ବୁଢ଼ୀ ମୁହଁରୁ ଏ କଥା ଶୁଣି ମାହାମୁଦ ବଡ ଲଜ୍ଜିତ ହେଲେ ଏବଂ ଖଣ୍ଡମାନଙ୍କୁ ଦମନ କରିବା ପାଇଁ ସଙ୍ଗେ ସଙ୍ଗେ ବାହାରି ପଡ଼ିଲେ ।

ଥରେ ମାହାମୁଦ ମନ୍ତ୍ରୀଙ୍କ ସଙ୍ଗେ ଘୋଡ଼ା ଚଢ଼ି ଯାଉଥିଲେ । ସେ ଆଗରୁ ଜାଣିଥିଲେ ଯେ, ମନ୍ତ୍ରୀ ପକ୍ଷୀମାନଙ୍କ କଥା ବୁଝିପାରନ୍ତି । ଦୁହେଁ ଯାଉଁ ଯାଉଁ ବାଟରେ ଦେଖିଲେ ଯେ, ଗୋଟିଏ ଗଛରେ ଯୋଡ଼ଏ ପେଚା ମୁହଁକୁ ମୁହଁ ଯୋଡ଼ି ବସିଛନ୍ତି । ମାହାମୁଦ ମନ୍ତ୍ରୀଙ୍କୁ ପଚାରିଲେ, 'କହିଲ ଭଲା, ପେଚା ଯୋଡ଼କ କଣ କଥାବାର୍ତ୍ତା ହେଉଛନ୍ତି ?' ଲୋଭୀ ମାହାମୁଦଙ୍କୁ ଭଲ ବାଟକୁ ଆଣିବା ପାଇଁ ମନ୍ତ୍ରୀ ବୁଝାଇ କରି କହିଲେ, "ଏହି ଦୁଇଟି ପେଚା ମଧ୍ୟରୁ ଗୋଟିକର ଗୋଟିଏ ପୁଅ ଓ ଅନ୍ୟଟିର ଗୋଟିଏ ଝିଅ ଅଛି । ଏବେ ପୁଅ ଝିଅଙ୍କ ପାଇଁ ବିବାହ ପ୍ରସ୍ତାବ ଚାଲିଛି । ପୁଅର ବାପ ଝିଅର ବାପକୁ କହୁଛି, 'ମୋ ପୁଅ ତୁମ ଝିଅକୁ ବିବାହ ହେଲେ ତୁମକୁ, ତୁମ ଝିଅକୁ ପଚାଶଟି ଭଙ୍ଗା ଗାଁ ଯୌତୁକ ଦେବାକୁ ପଡ଼ିବ ।' ଏ କଥା ଶୁଣି ଝିଅର ବାପ କହୁଛି, 'ସେଥି

ପାଇଁ କିଛି ଖବର ନାହିଁ । ସୁଲତାନ ମାହାମୁଦ ଜୀଇଥିଲା, ଯାଏ ମୁଁ ପଶୁଣକି ଭଙ୍ଗା ଗାଁ ଜଣ, ପାଞ୍ଚଶ ଭଙ୍ଗା ଗାଁ ଦେଇପାରେ ।’

ମାହାମୁଦଙ୍କ ଅମଳରେ ଯେ ଗାଁଗଣ୍ଡା ଏପରି ଭାଙ୍ଗିରୁଜି ଯାଉଛି, ଏ କଥା ଜଣାଇବା ପାଇଁ ମନ୍ତ୍ରୀ ଏହିପରି କହିଲେ । ମାହାମୁଦଙ୍କ ମନକୁ ଏ କଥା ବଡ ଘେନିଲା । ସେହି ଦିନୁ ସେ ଆଉ ରାଜ୍ୟ ଧ୍ୱଂସ କରିବାକୁ ମନ ବଳାଇଲେ ନାହିଁ ।

ମାହାମୁଦ ଜଣେ ସାହିତ୍ୟପ୍ରିୟ ରାଜା ଥିଲେ । ତାଙ୍କ ରାଜସଭାରେ ପାର୍ଦ୍ଦୋଷୀ ବୋଲି ଜଣେ ବଡ କବି ଥିଲେ । ସେ ଅନେକ ଭଲ ଭଲ କବିତା ଲେଖିଯାଇଛନ୍ତି ।

---

# ମହମ୍ମଦଘୋରୀ

ମାହାମୁଦ ରାଜ୍ୟ ଜୟ କରିବାକୁ ଆସିଥିଲେ । ତେଣୁ ସେ ଯେଉଁ ଦେଶ ଲୁଣ୍ଟି କରି ଯାଉଥିଲେ, ସେ ଦେଶରେ କିପରି ଭଲ ଶାସନ ଚଳିବ, ସେଥିଲାଗି ଭାବୁ ନ ଥିଲେ । ସେ ମଲା ପରେ ତାଙ୍କ ରାଜ୍ୟ ଛାରଖାର ହୋଇପଡିଲା ।

ଗଜନୀ ଓ ପାରସ୍ୟ ରାଜ୍ୟ ଭିତରେ ଘୋର ବୋଲି ଏକ ଛୋଟିଆ ରାଜ୍ୟ ଥିଲା । ମାହାମୁଦଙ୍କ ପରେ ଘୋର ବଂଶର ରାଜାମାନେ ଗଜନୀ ବଂଶକୁ ତଡିଦେଇ ଗଜନୀ ମାଡିବସିଲେ । ତଡା ଖାଇଲା ପରେ ଗଜନୀ ରାଜାମାନେ ଲାହୋରରେ ଅଳ୍ପ କେତେ ଦିନ ରାଜା ବୋଲାଇଥିଲେ ।

ମହମ୍ମଦଘୋରୀ ଘୋରୀବଂଶର ପ୍ରଧାନ ରାଜା । ସେ ଭାରତକୁ ନଅ ଥର ଆକ୍ରମଣ କରି ଅନେକ ରାଜ୍ୟ ଜିଣିଥିଲେ । ସେ ପ୍ରଥମେ ପଞ୍ଜାବ ଓ ସିନ୍ଧୁଦେଶ ଜୟ କଲେ । ମାତ୍ର ଗୁଜରାଟ ରାଜାଙ୍କ ପାଖରେ ଯୁଦ୍ଧରେ ହାରିଥିଲେ । ପଞ୍ଜାବ ଜୟ ପରେ ତାଙ୍କର ଇଚ୍ଛା ହେଲା, ଭାରତର ଉତ୍ତର ପ୍ରଦେଶମାନ ଜୟ କରିବେ ।

Digitized by srujanika@gmail.com

ସେହି ସମୟରେ ମଧ୍ୟ-ଭାରତରେ ତିନୋଟି ପ୍ରାଧାନ ରାଜପୁତ ରାଜ୍ୟ ଥିଲା—ଦିଲ୍ଲୀ, କନୌଜ ଓ ଆଜମୀର । ଦିଲ୍ଲୀ ଓ ଆଜମୀରରେ ରାଠୋର-ବୀର ପୃଥ୍ୱୀରାଜ ଏବଂ କନୌଜରେ ଚୌହାନ ଜୟଚନ୍ଦ୍ର ରାଜପଣ କରୁଥିଲେ । ଦିଲ୍ଲୀ ରାଜ୍ୟ ଆଗେ ଅନଙ୍ଗପାଳ ବୋଲି ଜଣେ ରାଜାଙ୍କ ହାତରେ ଥିଲା । ପୃଥ୍ୱୀରାଜ ଓ ଜୟଚନ୍ଦ୍ର ଅନଙ୍ଗପାଳଙ୍କର ଦୁଇ ନାତି । ଅନଙ୍ଗପାଳଙ୍କର ପୁଅ ନ ଥିବାରୁ ସେ ସାନ ନାତି ପୃଥ୍ୱୀରାଜଙ୍କୁ ଦିଲ୍ଲୀ ଦେଇଥିଲେ । ପୃଥ୍ୱୀରାଜ ଓ ଜୟଚନ୍ଦ୍ର ଦୁହେଁ ଦୁହିଙ୍କୁ ବଳ ବୀର । ମହମ୍ମଦଘୋରୀ ଭାରତର ପଶ୍ଚିମ ପଟ ଜୟ କଲା ବେଳକୁ ଏ ଦୁହେଁ ଭାରତର ସମ୍ରାଟ୍ ହେବାକୁ ଚେଷ୍ଟା କରୁଥିଲେ । ଦୁହିଁଙ୍କ ଭିତରେ ପ୍ରବଳ ବିବାଦ ଚାଲିଥିଲା । ଜୟଚନ୍ଦ୍ର ବଡ ନାତି ହୋଇ ରାଜ୍ୟ ନ ପାଇବାରୁ ସେ ସବୁବେଳେ ପୃଥ୍ୱୀରାଜଙ୍କ ଅମଙ୍ଗଳ ଚାହୁଁଥିଲେ ।

ମହମ୍ମଦଘୋରୀ ଯେତେବେଳେ ପଞ୍ଜାବ ଡେଇଁ ଦିଲ୍ଲୀ ଆଡକୁ ଆସିଲେ, ପୃଥ୍ୱୀରାଜ ନିଜ ଅଧୀନରେ ଥିବା ୧୬୦ ଜଣରାଜାଙ୍କୁ ଧରି ତରୋରୀଠାରେ ଯୁଦ୍ଧକୁ ଠିଆ ହେଲେ । ୧୧୯୧ ଖ୍ରୀଷ୍ଟାବ୍ଦରେ ଏହି ଯୁଦ୍ଧ ହୋଇଥିଲା । ଯୁଦ୍ଧରେ ପୃଥ୍ୱୀରାଜ ଜିଣିଲେ । ଘୋରୀ ବଡ କଷ୍ଟରେ ପ୍ରାଣ ନେଇ ସିନ୍ଧୁ ଦେଇ ବାଟେ ନିଜ ରାଜ୍ୟକୁ ଚାଲିଗଲେ ।

---

## ଭାରତର ଶେଷ ସ୍ୱାଧୀନ ରାଜା

ପୃଥ୍ୱୀରାଜ ମହମ୍ମଦଘୋରୀଙ୍କୁ ପରାସ୍ତ କରିବାରୁ ତାଙ୍କୁ ଦେଶରେ ସମସ୍ତେ ଧନ୍ୟ ଧନ୍ୟ କଲେ । ଏ କଥା ଜୟଚନ୍ଦ୍ରଙ୍କୁ ସୁହାଇଲା ନାହିଁ । ସେ ପୃଥ୍ୱୀରାଜଙ୍କୁ ଅପମାନ ଦେବାପାଇଁ ଏବଂ ନିଜକୁ ଭାରତରେ ସମ୍ରାଟ୍ ବୋଲି ଘୋଷଣା କରିବା ପାଇଁ ଗୋଟିଏ ରାଜସୂୟ ଯଜ୍ଞ ଆରମ୍ଭ କଲେ ।

**ସଂଯୁକ୍ତାଙ୍କ ସ୍ୱୟମ୍ବର—**

ତାଙ୍କର ସଂଯୁକ୍ତା ବୋଲି ଗୋଟିଏ ସୁନ୍ଦରୀ ଝିଅ ଥିଲା । ସେହି ସଭାରେ ସଂଯୁକ୍ତାଙ୍କର ସ୍ୱୟମ୍ବର ହେବା କଥା ଠିକ୍ ହୋଇଥିଲା । ଅଗେ ଆମ

Digitized by srujanika@gmail.com

ଦେଶରେ କନ୍ୟାମାନେ ମନକୁ ବର ବାଛି ବାହା ହେବା ପ୍ରଥା ଥିଲା । ଜୟଚନ୍ଦ୍ର ଯେଉଁ ସଭା କଲେ, ସେଠାକୁ ଭାରତର ସବୁ ରଜାଙ୍କୁ ନିମନ୍ତ୍ରଣ କଲେ; ମାତ୍ର ପୃଥ୍ୱୀରାଜଙ୍କୁ ନିମନ୍ତ୍ରଣ କଲେ ନାହିଁ । ଅଧିକନ୍ତୁ ମଧ୍ୟ ତାଙ୍କୁ ଅପମାନ ଦେବା ପାଇଁ ତାଙ୍କର ଗୋଟିଏ ମୂର୍ତ୍ତି ତିଆରି କରି ଦୁଆର ମୁହଁରେ ଦୁଆରୀ କରି ବସାଇଦେଲେ । ସଂଯୁକ୍ତା ପୃଥ୍ୱୀରାଜଙ୍କୁ ବାହା ହେବାକୁ ଠିକ୍ କରିଥିଲେ । ସଭାରେ ତାଙ୍କୁ ନ ଦେଖି ସେହି ମୂର୍ତ୍ତି ଗଳାରେ ବରଣ-ମାଳା ପକାଇଦେଲେ । ପାଖରେ ପୃଥ୍ୱୀରାଜ ସୈନ୍ୟ ଧରି ଲୁଚି ରହିଥିଲେ । ସେ ସଙ୍ଗେ ସଙ୍ଗେ ସଂଯୁକ୍ତାଙ୍କୁ ଘୋଡାରେ ବସାଇ ରାଜ୍ୟକୁ ଚାଲିଗଲେ । ଜୟଚନ୍ଦ୍ର ଏଥିରେ ଅଧିକ ଅପମାନ ପାଇଲେ । ଯୁଦ୍ଧରେ ପୃଥ୍ୱୀରାଜଙ୍କଠାରୁ ହାରିଗଲେ । ତେଣେ ମହମ୍ମଦଘୋରୀ ରାଜ୍ୟକୁ ଫେରି ଆଉ ଥରେ ପୃଥ୍ୱୀରାଜଙ୍କ ସଙ୍ଗେ ଯୁଦ୍ଧ କରିବାକୁ ଭାବୁଥିଲେ । ଜୟଚନ୍ଦ୍ର ପୃଥ୍ୱୀରାଜଙ୍କ ଉପରେ ରାଗ ଶୁଝାଇବା ପାଇଁ ତାଙ୍କୁ ଡକାଇ ପଠାଇଲେ । ତରୋରୀ ଯୁଦ୍ଧର ଦୁଇ ବର୍ଷ ପରେ ୧୧୯୩ ଖ୍ରୀଷ୍ଟାବ୍ଦରେ ଘୋରୀ ପୁଣି ଦିଲ୍ଲୀ ବିରୁଦ୍ଧରେ ଆସିଲେ । ଏଥର ପୃଥ୍ୱୀରାଜ ହିନ୍ଦୁ ରାଜାମାନଙ୍କୁ ମେଳାଇ ଥାନେଶ୍ୱରଠାରେ ପଠାଣ ସୈନ୍ୟଙ୍କୁ ବାଧାଦେଲେ । ପୃଥ୍ୱୀରାଜ ହାରିଲେ । ମହମ୍ମଦଘୋରୀ ତାଙ୍କୁ ବନ୍ଦୀ କରି ହାଣି ଦେଲେ । ଭାରତର ସ୍ୱାଧୀନତା ଏହିଠାରୁ ଲୋପ ହେଲା ।

ଏହା ପରେ ମହମ୍ମଦ ଘୋରୀ ଗୋଟି ଗୋଟି କରି ହିନ୍ଦୁ ରାଜ୍ୟ ଜିଣି-ନେଲେ । ଶେଷରେ ଜୟଚନ୍ଦ୍ରଙ୍କ କାନ୍ୟକୁବ୍‌ଜକୁ ଆକ୍ରମଣ କରି ଅଧିକାର କଲେ । ଏ ଅପମାନ ପାଇ ଜୟଚନ୍ଦ୍ର ଗଙ୍ଗାରେ ବୁଡିମଲେ । ଘୋରୀ ନିଜେ ଦିଲ୍ଲୀରେ ରହି ରାଜ୍ୟ ବୁଝାଶୁଝା କଲେ ନାହିଁ । କୁତବୁଦ୍ଦିନ ବୋଲି ତାଙ୍କର ଜଣେ ଦାସ କର୍ମଚାରୀଙ୍କୁ ଦିଲ୍ଲୀରେ ରଖାଇଦେଇ ଗଲେ । କୁତବୁଦ୍ଦିନ ଅଯୋଧ୍ୟା, ଗୁଜରାଟ ପ୍ରଭୃତି ଜିଣିଲା ପରେ ବକ୍ତିଆର ଖିଲଜି ବୋଲି ତାଙ୍କର ଜଣେ ପଠାଣ ସେନାପତି ୧୧୯୭ ରେ ବିହାର ଏବଂ ୧୧୯୯ ରେ ବଙ୍ଗଳା ଜୟ କଲେ । ବିହାରରେ ଅନେକ ବୌଦ୍ଧଙ୍କୁ ମାରି ମଠ ପୋଡି ଦେଇ ସେ ରାଜ୍ୟ ଛାରଖାର କଲେ । ବଙ୍ଗଳାର ହିନ୍ଦୁରାଜା ଲକ୍ଷ୍ମଣ ସେନ ତାଙ୍କ ଭୟରେ ରାଜଧାନୀ ଛାଡି ପଳେଇଲେ । ତା ପରେ ୧୨୦୬ ରେ

Digitized by srujanika@gmail.com

ଓଡ଼ିଶାକୁ ଆସି ଗଜପତି ଅନଙ୍ଗଭୀମଙ୍କ ପାଖେ ଶରଣ ପଶିଲେ । ସେତେବେଳେ ଓଡ଼ିଶା ରାଜ୍ୟ ସ୍ୱାଧୀନ ଥିଲା । ଗଜପତି ଅନଙ୍ଗଭୀମ ତାଙ୍କୁ ଜମିବାଡ଼ି ଖଞ୍ଜିଦେଇ ପୁରୀରେ ଆଶ୍ରୟ ଦେଲେ । ଏହି ରାଗରେ ପଠାଣମାନେ ୧୨୦୫ ଖ୍ରୀଷ୍ଟାବ୍ଦରେ ଥରେ ଓଡ଼ିଶା ଆକ୍ରମଣ କରିଥିଲେ; ମାତ୍ର ହାରି ଫେରିଗଲେ । ମହମ୍ମଦଘୋରୀ ମଲା ପରେ କୁତବୁଦ୍ଦିନ ୧୨୦୬ରେ ଦିଲ୍ଲୀରେ ରାଜା ହେଲେ ।

---

## ଦାସବଂଶ

କୁତବୁଦ୍ଦିନଙ୍କ ଘର ତୁର୍କୀ ଦେଶ । ସେ ଏକ ବଡ଼ଲୋକ ଘରେ ଜନ୍ମ ହୋଇଥିଲେ । ଅତି ପିଲା ଥିଲାବେଳେ ଥରେ କୌଣସି ଏକ ଯୁଦ୍ଧରେ ଶତ୍ରୁପକ୍ଷ ଲୋକେ ତାଙ୍କୁ ତାଙ୍କ ବାପାମାଆଙ୍କ ପାଖରୁ ଛଡ଼ାଇ ଆଣିଥିଲେ । କିଛିଦିନ ପରେ ମହମ୍ମଦଘୋରୀ ତାଙ୍କୁ କିଣି ଆଣି ନିଜେ ପାଳିଲେ । ସେ ନିଜେ ଗୋଲାମ ବା ଦାସ ଥିବାରୁ ଏହି ବଂଶକୁ ଦାସବଂଶ କୁହାଯାଏ । ଏହି ବଂଶରେ ମୋଟରେ ଦଶ ଜଣ ରାଜା ୮୪ ବର୍ଷ ରାଜୁତି କରିଥିଲେ ।

କୁତବୁଦ୍ଦିନ ପିଲାଦିନୁ ଭାରି ସାହସୀ ଥିଲେ । ମହମ୍ମଦ ତାଙ୍କୁ ସେନାପତି କରି ଭାରତକୁ ଆଣିଥିଲେ, ପରେ ତାଙ୍କ କାର୍ଯ୍ୟରେ ଖୁସି ହୋଇ ନିଜ ଝିଅ ସହିତ ବାହା କରାଇଦେଇ ଶେଷରେ ଦିଲ୍ଲୀର ଶାସନକର୍ତ୍ତା କରି ଦେଇଥିଲେ । କୁତବୁଦ୍ଦିନ ଭାରତର ପ୍ରଥମ ପଠାଣ ରାଜା । ଦିଲ୍ଲୀ ତାଙ୍କର ରାଜଧାନୀ ଥିଲା ।

କୁତବୁଦ୍ଦିନ ପ୍ରଥମେ ଭାରି ଦାତା ଥିଲେ । ମାତ୍ର ରାଜା ହେଲା ପରେ ତାଙ୍କର ଭଲ ଗୁଣ ସବୁ କୁଆଡ଼େ ଉଭେଇଗଲା । ସେ ମଦ ଖାଇ ଭୋଗ ବିଳାସରେ କାଳ କାଟି ୧୨୧୦ ଖ୍ରୀଷ୍ଟାବ୍ଦରେ ଘୋଡ଼ାରୁ ପଡ଼ି ମରିଗଲେ । ସେ ଦିଲ୍ଲୀଠାରେ କୁତବ୍ ମିନାର ନାମରେ ଏକ ପ୍ରକାଣ୍ଡ ସ୍ତମ୍ଭ ତିଆରି କରିଥିଲେ । ତାହାର ଉଚ୍ଚତା ୨୪୦ ଫୁଟ ।

Digitized by srujanika@gmail.com

କୁତବୁଦ୍ଦିନଙ୍କ ପରେ ଆଲ୍‌ତାମସ୍ ଦିଲ୍ଲୀର ରାଜା ହେଲେ । ଏ ଜଣେ ତୁର୍କୀ ରାଜାଙ୍କର ପୁଅ । ତାଙ୍କ ଭାଇମାନେ ତାଙ୍କୁ ଭଲ ପାଉ ନ ଥିଲେ । ଥରେ ସେମାନେ ବଣ ଭିତରେ ଦାଲେ ବେପାରୀଙ୍କୁ ତାଙ୍କୁ ବିକି ଦେଇଥିଲେ । କେତେ ବର୍ଷ ପରେ କୁତବୁଦ୍ଦିନ ସେହି ବେପାରୀଙ୍କଠାରୁ ତାଙ୍କୁ ପଚାଶ ହଜାର ମୁଦ୍ରାରେ କିଣି ଆଣିଲେ । ତା ପରେ ଦିଲ୍ଲୀର ରାଜା ହେଲା ପରେ ନିଜର ଝିଅ ସହିତ ତାଙ୍କୁ ବାହା ଦେଇଥିଲେ ।

**ଆଲ୍‌ତାମସ୍**—ଆଲ୍‌ତାମସ୍ ୧୨୧୧ ରୁ ୧୨୩୬ ପର୍ଯ୍ୟନ୍ତ ରାଜୁତି କରିଥିଲେ । ସେ ଏ ବଂଶର ସର୍ବଶ୍ରେଷ୍ଠ ରାଜା । ତାଙ୍କ ଅମଳରେ ଦାଲେ ମୋଗଲ ଜାତିର ଲୋକ ଭାରତ ଲୁଟି କରିବାକୁ ଆସିଥିଲେ । ସେ ଉତ୍ତର-ଭାରତରୁ ବହୁତ ରାଜ୍ୟ ଜିଣିଥିଲେ । ତାଙ୍କର ପୁଅମାନେ ଉପଯୁକ୍ତ ନ ଥିବାରୁ ରେଜିଆ ବୋଲି ଗୋଟିଏ ଝିଅକୁ ରାଜଗାଦୀ ଦେଇଯାଇଥିଲେ ।

**ରେଜିଆ**—ରେଜିଆ 'ସୁଲ୍‌ତାନ ରେଜିଆ' ନାଁ ନେଇ ପୁରୁଷ ବେଶରେ ରାଜଗାଦୀରେ ବସି ସାଢେ ତିନି ବର୍ଷ ରାଣୀ ହୋଇଥିଲେ । ସେ ରାଜକାର୍ଯ୍ୟ ଭଲ ବୁଝି ପାରୁଥିଲେ ଏବଂ ଭଲ ଯୁଦ୍ଧବିଦ୍ୟା ଜାଣିଥିଲେ । ରାଣୀ ହେବା ପରେ ସେ ନିଜର ଜଣେ ସେନାପତିଙ୍କୁ ବାହା ହେବାକୁ ଠିକ୍ କଲେ । ଏଥିରେ ପାତ୍ରମନ୍ତ୍ରୀମାନେ ରାଗିଯାଇ ତାଙ୍କୁ ମାରିଦେଲେ ।

**ନାସିରୁଦ୍ଦିନ**—ନାସିରୁଦ୍ଦିନ ଦାସବଂଶର ଅଷ୍ଟମ ରାଜା । ସେ ୧୨୪୬ରେ ରାଜା ହୋଇ ୨୦ ବର୍ଷ ରାଜୁତି କରିଥିଲେ । ତାଙ୍କ ପରି ସରଳ ରାଜା ଦାସବଂଶରେ କେହି ନ ଥିଲେ । ସେ ନିଜକୁ ପ୍ରଜାଙ୍କ ସେବକ ବୋଲି ଭାବି କାର୍ଯ୍ୟ କରୁଥିଲେ । ନିଜ ପାଇଁ ରାଜକୋଷରୁ ପଇସାଏ ସୁଦ୍ଧା ଖର୍ଚ୍ଚ କରୁ ନ ଥିଲେ । ନିଜେ ପଣ୍ଡିତ ଥିବାରୁ ବହି ଲେଖି ଯାହା ଅର୍ଜୁଥିଲେ, ସେଥିରେ ଚଳୁଥିଲେ । ରାଜଅନ୍ତଃପୁରରେ ଦାସଦାସୀ କେହି ନ ଥିଲେ । ଥରେ ରାଣୀ ରାନ୍ଧୁ ରାନ୍ଧୁ ଆଙ୍ଗୁଠି ପୋଡି ପକାଇ ତାଙ୍କୁ ସେବକଟିଏ ରଖିବାକୁ କହିଲେ । ରାଣୀଙ୍କ କଥା ଶୁଣି ସେ କହିଥିଲେ, "ସେ କଥା କେମିତି ନାହିଁ । ସେବକ ରଖିବାକୁ ପଇସା କୁଆଡୁ ପାଇବ ? ଭଣ୍ଡାର ତ ମୋର ନୁହେଁ, ପ୍ରଜାଙ୍କର । ତାଙ୍କ ଅର୍ଥ ମୋ ସୁଖ ପାଇଁ ଲଗାଇ ପାରିବି ନାହିଁ ।"

Digitized by srujanika@gmail.com

ନାସିରୁଦ୍ଦିନ କାହା ମନରେ କଷ୍ଟ ଦେଉ ନ ଥିଲେ । ସେହି ବିଷୟରେ ଗୋଟିଏ କଥା ଅଛି—ଥରେ ସେ କେତେଗୁଡ଼ିଏ ଗୀତ ଲେଖି ଦରବାରରେ ଜଣେ ମନ୍ତ୍ରୀଙ୍କୁ ଦେଖାଇଲେ । ମନ୍ତ୍ରୀ କେତେକ ଭୁଲ ଦେଖାଇବାରୁ ସେ ସେହିଠାରେ ଗୀତକୁ ସଂଶୋଧନ କରିଦେଲେ । ମାତ୍ର ମନ୍ତ୍ରୀ ସେଠାରୁ ଗୁଲି-ଯିବା ପରେ ଗୀତରେ ଆଗେ ଯାହା ଲେଖିଥିଲେ, ପୁଣି ସେହି କଥା ଲେଖି-ଦେଲେ । ଏହା ଦେଖି ଜଣେ ବନ୍ଧୁ ତାଙ୍କୁ ପଚାରିଲେ, "ଆପଣ ଏପରି କଲେ କାହିଁକି ?" ରାଜା କହିଲେ, "ମନ୍ତ୍ରୀ ଯାହା କହିଲେ ତାହା ଭୁଲ ; ମାତ୍ର ଏତେ ଲୋକଙ୍କ ଭିତରେ ତାଙ୍କର ଭୁଲ ହୋଇଛି ବୋଲି କହିଲେ ତାଙ୍କ ମନରେ କଷ୍ଟ ହୋଇଥାନ୍ତା । ମୁଁ ଯାହା ଲେଖିଥିଲି, ତାହା ଠିକ୍ । ପରେ ମନ୍ତ୍ରୀଙ୍କୁ ଏକୁଟିଆ ବେଳେ ତାଙ୍କ ଦୋଷ କହିଦେଲେ ସେ ବୁଝି ପାରିବେ ।"

**ବୁଲବନ୍**—ନାସିରୁଦ୍ଦିନଙ୍କର ପୁଅ ନ ଥିବାରୁ ବୁଲବନ୍ ବୋଲି ତାଙ୍କର ଜଣେ ମନ୍ତ୍ରୀ ରାଜା ହେଲେ । ବୁଲବନ୍ ଆଲ୍‌ତାମସ୍‌ଙ୍କ ଜଣେ ଦାସ ଥାଇଁ ତାଙ୍କ ଝିଅଙ୍କୁ ବାହା ହୋଇଥିଲେ । ତାଙ୍କ ଅମଳରେ ହିନ୍ଦୁମାନେ ନାନା ସ୍ଥାନରେ ବିଦ୍ରୋହ କରିଥିଲେ । ବଙ୍ଗଳାରେ ବିଦ୍ରୋହ ଦବାଇବାକୁ ଯାଇ ସେ ସେଠା ରାଜଧାନୀରେ ତିନି ଦିନ କାଳ ଲୋକଙ୍କୁ ହଣାଇଥିଲେ । ତାଙ୍କ ପରେ କାଇକୋବାଦ ବୋଲି ତାଙ୍କର ଜଣେ ନାତି କିଛି ଦିନ ରାଜା ହେଲେ । ଜଲାଲ-ଉଦ୍ଦିନ ନାମରେ ଜଣେ ମନ୍ତ୍ରୀ କାଇକୋବାଦଙ୍କୁ ହତ୍ୟା କରି ୧୨୯୦ ଖ୍ରୀଷ୍ଟା-ବ୍ଦରେ ଗଦୀ ମାଡ଼ିବସିଲେ । ଏହିଠାରୁ ଦାସବଂଶ ଲୋପ ହେଲା ।



Digitized by srujanika@gmail.com

# ଖିଲଜି ବଂଶ

**ଜଲାଲଉଦ୍ଦିନ—**

ଜଲାଲଉଦ୍ଦିନ ଖିଲିଜି ରାଜା ହେଲା ବେଳକୁ ବୁଢା ହୋଇଯାଇଥିଲେ । ବୟସ ସତୁରି ବର୍ଷ ହୋଇଥିଲା । ସେ ଖିଲଜି ନାମକ ସ୍ଥାନର ଲୋକ ହୋଇଥିବାରୁ ଏହି ବଂଶକୁ ଖିଲିଜି ବଂଶ କହନ୍ତି । ଏହି ବଂଶରେ ତିନି ଜଣ ରାଜା ତିରିଶ ବର୍ଷ ରାଜପଣ କରିଥିଲେ ।

ଜଲାଲଉଦ୍ଦିନଙ୍କର ପୁଅ ନ ଥିବାରୁ ସେ ନିଜ ପୁତୁରା ଆଲ୍ଲାଉଦ୍ଦିନଙ୍କୁ ପୋଷା ପୁଅ କରିଥିଲେ । ଆଲ୍ଲାଉଦ୍ଦିନ ବଡ ନିଷ୍ଠୁର ଲୋକ । ଦିନେ ସେ ଦୂର ସ୍ଥାନରୁ ଆସି ଜଲାଲଉଦ୍ଦିନଙ୍କ ପାଖେ ପହଞ୍ଚିଲେ । ବୁଢା ତାଙ୍କୁ ଦେଖି ଆନନ୍ଦ ଗଦଗଦ ହୋଇ ସ୍ନେହରେ କୁଣ୍ଢାଇ ପକାଇଲେ । ସେତିକିବେଳେ ଆଲ୍ଲାଉଦ୍ଦିନ ତାଙ୍କ ବୁକୁରେ ଖଣ୍ଡା ଭୁଷି ମାରିଦେଲେ ।

**ଆଲ୍ଲାଉଦ୍ଦିନ—**

ଆଲ୍ଲାଉଦ୍ଦିନ ବଡ ଧନଲୋଭୀ । ମୁସଲମାନମାନଙ୍କ ମଧ୍ୟରେ ସେ ପ୍ରଥମେ ଦାକ୍ଷିଣାତ୍ୟ ଜୟ କରିଥିଲେ । ୧୨୯୪ ଖ୍ରୀଷ୍ଟାବ୍ଦରେ ସେ ବିନ୍ଧ୍ୟ ପର୍ବତ ପାର ହୋଇ ମାଳବ ଦେଶ ଜୟ କରିଥିଲେ ଏବଂ ଆଜକାଲିର ଦୌଲତା-ବାଦ ସହରକୁ ଲୁଟି କରି ବହୁ ଧନରତ୍ନ ବୋହି ଆଣିଥିଲେ ।

ଏହାଙ୍କ ଅମଳରେ ହିନ୍ଦୁ ଓ ଅନ୍ୟାନ୍ୟ ପ୍ରଜାମାନେ ବିଦ୍ରୋହୀ ହୋଇ-ଉଠିଥିଲେ । ସେମାନଙ୍କୁ ଦବାଇବା ପାଇଁ ଯାଇ ସେ ଏକା ଦିନକେ ତିରିଶ ହଜାର ଲୋକଙ୍କୁ ହଣାଇ ଦେଇଥିଲେ । ହିନ୍ଦୁମାନଙ୍କ ଜାଗିର ଜମିଦାରୀ ସବୁ ଛଡାଇନେଲେ, ସେମାନଙ୍କ ଉପରେ ନାନା ପ୍ରକାର କର ବଢାଇଲେ । ମେଳା, ଉତ୍ସବ ଓ ମଦ୍ୟ ପାନ କରିବାକୁ ଖୁବ୍ ଅଟେ ନିଷେଧ ଆଜ୍ଞା ଜାରି କଲେ ଏବଂ ଗୁଜୁରାଟ ଦେଶ ଜୟ କରିବାକୁ ଯାଇ ଲକ୍ଷ ଲକ୍ଷ ହିନ୍ଦୁଙ୍କୁ ହାଣି ପକାଇଲେ ।

କାଫୁର୍ ବୋଲି ଆଲ୍ଲାଙ୍କର ଜଣେ ସେନାପତି ଥିଲେ । ସେ ପ୍ରଥମେ ରାଜପୁତ ହିନ୍ଦୁ ଥିଲେ; ପରେ ମୁସଲମାନ ହୋଇ ତାଙ୍କର ବଡ ପ୍ରିୟ ହୋଇପଡିଲେ । ଏହି କାଫୁରଙ୍କ ବାହୁବଳରେ ଆଲ୍ଲା ଦାକ୍ଷିଣାତ୍ୟର ଅନେକ ହିନ୍ଦୁ ରାଜ୍ୟ ଜିଣିଲେ । କାଫୁର ଚାରି ଥର ଦାକ୍ଷିଣାତ୍ୟ ଆକ୍ରମଣ

Digitized by srujanika@gmail.com

କରି ସେତୁବନ୍ଧ ରାମେଶ୍ୱର ଯାଏଁ ଯାଇଥିଲେ । ଦକ୍ଷିଣଦେଶ ଲୁଟି କରି ସେ ଦିଲ୍ଲୀକୁ ବହୁତ ସମ୍ପତ୍ତି ଆଣିଥିଲେ ।

ମିବାରର ରାଣା ଭୀମସିହ୍ନଙ୍କର ପଦ୍ମିନୀ ବୋଲି ଗୋଟିଏ ସୁନ୍ଦରୀ ରାଣୀ ଥିଲେ । ପଦ୍ମିନୀଙ୍କୁ ପାଇବା ପାଇଁ ୧୩୦୦ ଖ୍ରୀଷ୍ଟାବ୍ଦରେ ଆଲ୍ଲା ଚତୋର ଆକ୍ରମଣ କଲେ । ମାତ୍ର ଚତୋରର ରାଜପୁତ ବୀରମାନେ ଏ ଅପମାନ କଥା ଶୁଣି ଯୁଦ୍ଧକୁ ବାହାରିବାରୁ ଆଲ୍ଲା ଆଉ ଯୁଦ୍ଧ କଲେ ନାହିଁ । କେବଳ ଥରେ ମାତ୍ର ପଦ୍ମିନୀଙ୍କୁ ଦେଖି ଫେରିଯିବାକୁ କହିଲେ । ତାଙ୍କ କଥାରେ ବିଶ୍ୱାସ କରି ରାଣା ଦର୍ପଣ ସାହାଯ୍ୟରେ ରାଣୀଙ୍କୁ ତାଙ୍କୁ ଦେଖାଇଦେଲେ । ସେହି ସମୟରେ ଆଲ୍ଲା କୌଶଳରେ ଭୀମସିହ୍ନଙ୍କୁ ବନ୍ଦୀ କରିନେଇ ରାଜପୁତ-ମାନଙ୍କୁ କହି ପଠାଇଲେ ଯେ, ପଦ୍ମିନୀଙ୍କୁ ନ ପାଇଲେ ରାଣାଙ୍କୁ ଛାଡ଼ିବେ ନାହିଁ । ଏଥିରେ ପଦ୍ମିନୀ ହତାଶ ହେଲେ ନାହିଁ । ସେ ଆଲ୍ଲାଙ୍କ ରାଣୀ ହେବା ପାଇଁ ଖବର ପଠାଇ ସାତ ଶହ ଶବାରରେ ଦାସୀମାନଙ୍କୁ ନେଇଯିବେ ବୋଲି କହିଲେ । ଆଲ୍ଲା ଏଥିରେ ଖୁସି ହୋଇ ତାଙ୍କ ବାଟ ଚାହିଁ ରହିଲେ । ଏଣେ ପଦ୍ମିନୀ ସାତ ଶହ ଶବାରରେ ସାତ ଶହ ବୀରଙ୍କୁ ବସାଇ ପଠାଣ ଶିବିରରେ ପହଞ୍ଚିଲେ । ଆଲ୍ଲା ଭୀମସିହ୍ନଙ୍କୁ ଖଲାସ କରିବା ଆଗରୁ ଥରେ ପଦ୍ମିନୀଙ୍କ ସହିତ ଦେଖା କରି ଯିବା ପାଇଁ ଛାଡ଼ିଦେଲେ । ଏହି ଅବସରରେ ପଦ୍ମିନୀ ଓ ଭୀମସିହ୍ନ କୌଶଳରେ ଗଡ଼କୁ ଚାଲି ଆସିଲେ । ତେଣେ ରାଜ-ପୁତମାନେ ଶବାରରୁ ବାହାରି ପଠାଣ ସୈନ୍ୟଙ୍କୁ ହାଣି ମାରି ଧ୍ୱଂସ କରିଦେଲେ । ଆଲ୍ଲା ସେଥର ପ୍ରାଣ ଘେନି ପଳାଇ ପୁଣି ୧୩୦୩ ଖ୍ରୀଷ୍ଟାବ୍ଦରେ ଚତୋର ଆକ୍ରମଣ କଲେ । ଏଥର ସବୁ ରାଜପୁତ ବୀର ଯୁଦ୍ଧ କରି କରି ମଲେ, ପଦ୍ମିନୀ ନିଆଁରେ ପଶି ପ୍ରାଣ ହରାଇଲେ; ଆଲ୍ଲା କିଛି ପାଇଲେ ନାହିଁ ।

ଅଲ୍ଲାଉଦ୍ଦିନଙ୍କ ଅମଳରେ ଦେଶରେ ମଦ ବିକା ବନ୍ଦ ଥିଲା । ଲୋକେ ମଦ ବିକଲେ ଦଣ୍ଡ ପାଉଥିଲେ । ତାଙ୍କ ଅମଳରେ ମୋଗଲମାନେ କେତେ ଥର ପଞ୍ଜାବ ଆକ୍ରମଣ କରିଥିଲେ । ପ୍ରଜାମାନଙ୍କଠାରୁ ଏ ଖଜଣା ସ୍ୱରୂପ ଅଧେ ଫସଲ ଆଦାୟ କରୁଥିଲେ ।

Digitized by srujanika@gmail.com

ଅଲ୍ଲାଉଦ୍ଦିନଙ୍କ ପରେ ଖିଲଜି ବଂଶର ଆଉ କେହି ଠାଣୁଆ ରାଜା ରହିଲେ ନାହିଁ । ଶେଷ ରାଜା ଖସ୍ରୁଙ୍କୁ ଗିୟାସଉଦ୍ଦିନ ତୋଗଲକ୍ ନାମକ ତାଙ୍କର ଜଣେ ସେନାପତି ହତ୍ୟା କରି ରାଜ୍ୟ ମାଡବସିଲେ ।

---

## ତୋଗଲକ ବଂଶ

**ମହମ୍ମଦ ତୋଗଲକ—**

ମହମ୍ମଦ ତୋଗଲକ ତୋଗଲକ ବଂଶର ପ୍ରଧାନ ରାଜା । ସେ ଖୁବ୍ ଜ୍ଞାନୀ ଓ ସାହସୀ ଲୋକ ଥିଲେ; ମାତ୍ର ଏପରି ଆଡ଼ବାଙ୍କା ପରି ବେଳେ ବେଳେ କାର୍ଯ୍ୟ କରୁଥିଲେ ଯେ, ରାଜ୍ୟ ଛାରଖାର ହୋଇଯାଉଥିଲା । ତାଙ୍କ କାର୍ଯ୍ୟ ଦେଖି ଲୋକେ ତାଙ୍କୁ ପାଗଳ ସୁଲତାନ ବୋଲି ଡାକୁଥିଲେ । ସେ କେବେ ପରର ସୁବିଧା ଅସୁବିଧା କଥା ଭାବୁ ନ ଥିଲେ । ସେ ଥରେ ଭାବିଲେ ଯେ, ରାଜଧାନୀ ଦିଲ୍ଲୀ ସହର ରାଜ୍ୟର ଠିକ୍ ମଝିରେ ନାହିଁ । ତେଣୁ ଦାକ୍ଷିଣାତ୍ୟର ଦୌଲତାବାଦକୁ ରାଜଧାନୀ କରିବାପାଇଁ ଲକ୍ଷ ଲକ୍ଷ ଟଙ୍କା ଖର୍ଚ୍ଚ କଲେ । ଦିଲ୍ଲୀର ସବୁ ଲୋକଙ୍କୁ ଦୌଲତାବାଦ ଯିବାକୁ ହୁକୁମ ହେଲା । ଲୋକେ ପ୍ରାଣଭୟରେ ଆଠଶ ମାଇଲ ବାଟ ଚାଲି ଚାଲି ଦୌଲତାବାଦରେ ପହଞ୍ଚିଲେ । କେତେ ଲୋକ ବାଟରେ ମଲେ; କେତେ ଘୋର କଷ୍ଟ ପାଇଲେ । ଏତେ ଲୋକ ରହିବା ପାଇଁ ନୂଆ ରାଜଧାନୀରେ ଘରଦ୍ୱାର ନ ଥିଲା । ପୁଣି ସେମାନଙ୍କୁ ଦିଲ୍ଲୀକୁ ଫେରି ଆସିବାକୁ ହୁକୁମ ଦେଲେ । ଏହିପରି ଦୁଇ ଥର ଯିବା ଆସିବା ହେବାରୁ ଲୋକେ ବାଘ ଭାଲୁରଙ୍କ ପରି ମଲେ ଓ ଦେଶରେ ଦୁର୍ଭିକ୍ଷ ପଡ଼ିଲା ।

କଥା ଅଛି ଯେ, ଦିଲ୍ଲୀରୁ ଦୌଲତାବାଦକୁ ଲୋକେ ଗଲାବେଳେ ଗୋଟିଏ ଅନ୍ଧ ଯାଇପାରିଲା ନାହିଁ । ମହମ୍ମଦ ହୁକୁମ ଦେଲେ, ଅନ୍ଧକୁ ଘୋଷାରି ଘୋଷାରି ନେବାକୁ ହେବ । ସୈନ୍ୟମାନେ ଏ ହୁକୁମ ମାନି ଅନ୍ଧକୁ ଦୌଲତାବାଦରେ ପହଞ୍ଚାଇଲା ବେଳକୁ ତାର ଦୁଇ ପାଦ କେବଳ ବାକି ଥିଲା; ବାକି ସବୁ ବାଟରେ ଛିଣ୍ଡିଯାଇଥିଲା ।

Digitized by srujanika@gmail.com

ମହମ୍ମଦ ଚୀନ ଓ ପାରସ୍ୟ ଦେଶକୁ ଜିଣିବା ପାଇଁ ଥରେ ଦେଶରେ ବହୁତ ସୈନ୍ୟ ସଂଗ୍ରହ କଲେ । ଆଗ ପଛ କଥା ବିଚାରିଲେ ନାହିଁ । ଚୀନକୁ ଯେଉଁ ସୈନ୍ୟମାନେ ଗଲେ, ହିମାଳୟ ପାରି ହୋଇ ହୋଇ ଅଧେ ମଲେ; କେତେକଙ୍କୁ ଚୀନ ଲୋକେ ମାରିଦେଲେ । ବାକୀ ଯେଉଁମାନେ ଫେରିଲେ, ମହମ୍ମଦଙ୍କଦ୍ୱାରା ପ୍ରାଣ ଖାଇଲେ । ପାରସ୍ୟକୁ ଯିବା ସୈନ୍ୟମାନେ ଦରମା ନ ପାଇ ଖଜଣାଖାନା ଲୁଟିକରି ନେଲେ ।

ମହମ୍ମଦ ଏପରି ନିଷ୍ଠୁର ଥିଲେ ଯେ, ତାଙ୍କ କଥା ଶୁଣିଲେ କାନରେ ହାତ ଦେବାକୁ ହେବ । ରାଜ୍ୟର ଲୋକେ ଖଜଣା ଦେଇ ନ ପାରି ବଣକୁ ଚାଲିଯାନ୍ତି । ମହମ୍ମଦ ସୈନ୍ୟମାନଙ୍କୁ ଧରି ସେମାନଙ୍କୁ ଶିକାର କରିବାକୁ ଯାନ୍ତି । ସୈନ୍ୟମାନେ ବଣକୁ ଘେରି ପ୍ରଜାଙ୍କୁ ବାହୁଡାଇ ଆଣିଲା ପରେ ସେ ହାତୀ ଉପରେ ବସି ଗୁଳିଦ୍ୱାରା ପ୍ରଜାଙ୍କୁ ମାରୁଥାନ୍ତି ।

ମହମ୍ମଦଙ୍କ ଏପରି ଶାସନ ଯୋଗୁଁ ପଠାଣ ସାମ୍ରାଜ୍ୟ ଭାଙ୍ଗିଗଲା । ହିନ୍ଦୁ ରାଜାମାନେ ବିଦ୍ରୋହ ଆରମ୍ଭ କଲେ ଓ କେତେ ସ୍ଥାନରେ ଶାସନକର୍ତ୍ତା-ମାନେ ସ୍ୱାଧୀନ ହୋଇପଡିଲେ । ତାଙ୍କ ପରେ ସେହି ବଂଶରେ ଫିରୋଜସାହା ବୋଲି ଜଣେ ରାଜା ହେଲେ । ସେ କେତେ ବର୍ଷ ପ୍ରଜାଙ୍କୁ ଭଲରେ ପାଳିଥିଲେ, କୂଅ ପୋଖରୀ ଖୋଳାଇଥିଲେ, ସ୍କୁଲ ବସାଇଥିଲେ । ମାତ୍ର ହିନ୍ଦୁଙ୍କ ପ୍ରତି ତାଙ୍କର କଡା ଦୃଷ୍ଟି ଥିଲା । ସେ ହିନ୍ଦୁଙ୍କ ଦେଉଳ ସବୁ ଭାଙ୍ଗି ଚୂନା କରିଦେଲେ । ଯେ ମୁସଲମାନ ନୁହେଁ, ତା ଉପରେ ଅଧିକା କର ବସାଇଲେ । ଫଳରେ କେତେ ହିନ୍ଦୁ ଡରିମରି ମୁସଲମାନ ହେଲେ ।

ଏହି ବଂଶର ଶେଷ ରାଜା ମାହାମୁଦଙ୍କ ଅମଳରେ ତୈମୁର ବୋଲି ଜଣେ ମୋଗଲ ଭାରତ ଆକ୍ରମଣ କରି ରାଜ୍ୟକୁ ଛାରଖାର କରିଦେଇଗଲେ ।

---

## ତୈମୁରଲଙ୍ଗ

ଭାରତବର୍ଷକୁ ଯେତେ ଯେତେ ବାହାର୍ଦ୍ଦା ଆକ୍ରମଣ କରିଛନ୍ତି, ସେମାନଙ୍କ ମଧ୍ୟରେ ତୈମୁରଲଙ୍ଗ ଅତି ନିଷ୍ଠୁର । ମଣିଷଙ୍କୁ ସେ ମାଛି

Digitized by srujanika@gmail.com

ପର ମନେ କର ମାର ଦେଉଥିଲେ । ମଧ୍ୟ-ଏସିଆରେ ତାଙ୍କର ଘର ଥିଲା । ତାଙ୍କ ପିତା ତୁର୍କୀ ଓ ମାଆ ମୋଗଲ ଜାତିର ଲୋକ ଥିଲେ ।

ତୈମୁର ପିଲାଦିନୁ ଛୋଟା । ଏହି ଛୋଟା ତୈମୁର ଏପରି ସାହସୀ ଥିଲେ ଯେ, ଅଠଷଠି ବର୍ଷ ବୟସ ପର୍ଯ୍ୟନ୍ତ ଚୀନ, ରୁଷିଆ, ଭାରତ, ଆଫ-ଗାନିସ୍ଥାନ, ପାରସ୍ୟ ପ୍ରଭୃତି ଦେଶ ଲୁଣ୍ଠି କରି ରାଜ୍ୟ ଜୟ କରିବାରେ ଲାଗିଥିଲେ । ସେ ଯେଉଁଠାକୁ ଯାଉଥିଲେ, ମନୁଷ୍ୟ ରକ୍ତରେ ଦେଶ ଭାସୁ-ଥିଲା । ତାଙ୍କ ପଛେ ପଛେ ସେଠାରେ ଦୁର୍ଭିକ୍ଷ ଓ ହାଇଜା ଦେଖାଯାଉଥିଲା ।

ତୈମୁର ପଞ୍ଜାବ ବାଟେ ଦିଲ୍ଲୀ ଆକ୍ରମଣ କରିଥିଲେ । ଆସିବା ବାଟରେ ଯେତେ ଗାଁ ପଡ଼ିଲା, ତାହା ସବୁ ପୋଡ଼ି ଲୋକମାନଙ୍କୁ ହାଣି ଦେଇଥିଲେ । ବାକୀ ଯେଉଁମାନଙ୍କୁ ହାଣି ପାରିଲେ ନାହିଁ, ସେମାନଙ୍କୁ ବନ୍ଦୀ କରି ନେଇ ଆସିଥିଲେ । ସେ ଦିଲ୍ଲୀରେ ପହଞ୍ଚିଲା ବେଳକୁ ତାଙ୍କ ସଙ୍ଗରେ ଭାରତର ଲକ୍ଷେ ଲୋକ ବନ୍ଦୀ ହୋଇ ରହିଥିଲେ । ଏହି ବନ୍ଦୀମାନଙ୍କୁ ତାଙ୍କ ସୈନ୍ୟମାନେ ଜଗି ରଖିପାରୁ ନ ଥିଲେ ।

ଦିଲ୍ଲୀରେ ମାହାମୁଦ ତୋଗଲକ ସମ୍ରାଟ ଥିଲେ । ସେ ଅନେକ ହାତୀ ଓ ସୈନ୍ୟ ଧରି ତାଙ୍କୁ ବାଧା ଦେଲେ । ଏହି ଯୁଦ୍ଧ ହେବା ଆଗରୁ ତୈମୁର ବନ୍ଦୀ କରି ରଖିଥିବା ଲକ୍ଷେ ଲୋକଙ୍କୁ ଆଗେ ହଣାଇ ଦେଲେ । ତାଙ୍କର ଭୟ ହେଲା, କାଳେ ବନ୍ଦୀମାନେ ମାହାମୁଦଙ୍କ ଦଳରେ ମିଶିଯିବେ । ମାହାମୁଦ ଯୁଦ୍ଧରେ ହାରି ଗୁଜରାଟ ପଳାଇଗଲେ । ତୈମୁର ପାଞ୍ଚ ଦିନ ଦିଲ୍ଲୀରେ ରହି ଲୋକଙ୍କୁ ହାଣିମାରି ଲୁଣ୍ଠି କରିବାରେ ଲାଗିଲେ । ତାଙ୍କ ଦାଉରୁ ପିଲା, ବୁଢା, ଯୁବା କେହି ହେଲେ ଛାଡ଼ ପାଇଲେ ନାହିଁ ।

ବାଷଠି ବର୍ଷ ବୟସରେ ତୈମୁର ଭାରତ ଆକ୍ରମଣ କରିଥିଲେ । ଫେରିଲା ବେଳେ ହିନ୍ଦୁତୀର୍ଥ ହରିଦ୍ୱାର ବାଟେ ଯାଇ ସେହି ତୀର୍ଥକୁ ଧ୍ୱଂସ କରିଦେଇ ଗଲେ ।

—:୫୦:—

Digitized by srujanika@gmail.com

# ସୟଦ ଓ ଲୋଦି ବଂଶ

ଏହିଠାରୁ ଭାରତରେ ପଠାଣ ରାଜତ୍ୱ ଏକପ୍ରକାର ଶେଷ ହେଲା । ତୈମୁରଙ୍କ ଆକ୍ରମଣ ପରେ ସୟଦ ଓ ଲୋଦି ବଂଶର ରାଜାମାନେ କେତେ ବର୍ଷ ରାଜା ହୋଇଥିଲେ । ମାତ୍ର ରାଜ୍ୟ ଭାଙ୍ଗିରୁଜି ଯାଇଥିଲା । ଦିଲ୍ଲୀ ଛଡ଼ା ଆଉ କେଉଁଠି ତାଙ୍କୁ କେହି ରାଜା ବୋଲି ମାନୁ ନ ଥିଲେ । ଲୋଦି ବଂଶର ଶେଷ ସମ୍ରାଟ ଇବ୍ରାହିମ୍ ଲୋଦିଙ୍କ ଅମଳରେ ମୋଗଲବୀର ବାବର ଭାରତ ଆକ୍ରମଣ କରି ଦିଲ୍ଲୀ ଅଧିକାର କଲେ ।

---

# ଉତ୍କଳର ଗଙ୍ଗବଂଶ

**ଶୈଳଗଙ୍ଗ—**

ପୂର୍ବରୁ କୁହାଯାଇଅଛି ଯେ, ଶୈଳଗଙ୍ଗ କେଶରୀ ବଂଶର ଶେଷ ରାଜା ସୁବର୍ଣ୍ଣକେଶରୀଙ୍କୁ ପରାସ୍ତ କରି ଉତ୍କଳର ରାଜା ହୋଇଥିଲେ । ଉତ୍କଳର ଦକ୍ଷିଣକୁ ଗଞ୍ଜାମ ଜିଲ୍ଲାର ଋଷିକୁଲ୍ୟାଠାରୁ ଗୋଦାବରୀ ନଦୀଯାଏ ଥିବା ରାଜ୍ୟର ନାଁ କଳିଙ୍ଗ ଥିଲା । ରାଜା ଶୈଳଗଙ୍ଗ ଦେବ ସେହି କଳିଙ୍ଗ ରାଜା ରାଜରାଜ ଦେବଙ୍କ ପୁଅ । ଶୈଳଗଙ୍ଗଙ୍କ ବାପା ଗଙ୍ଗବଂଶର ରାଜା ଓ ମାତା ଶୈଳ ରାଜ୍ୟର ଝିଅ ବୋଲି ତାଙ୍କ ନାଁ ଶୈଳଗଙ୍ଗ । କେହି କେହି ତାଙ୍କୁ ଶୈଳଗଙ୍ଗ ବା ଶୈରଗଙ୍ଗ ବା ଶ୍ୱେତଗଙ୍ଗ ଦେବ ବୋଲି କହୁଥିଲେ ।

ଶୈଳଗଙ୍ଗ ଦେବ ଉତ୍କଳ ଜିଣି ଉତ୍କଳ ଓ କଳିଙ୍ଗ ଉଭୟ ରାଜ୍ୟରେ ରାଜା ହେଲେ । କଟକ ତାଙ୍କର ରାଜଧାନୀ ହେଲା । ସେ ଭାରି ଯୋଦ୍ଧା ଥିଲେ । ଯୁଦ୍ଧରେ ସେ ଅନେକ ରାଜାଙ୍କୁ ହରାଇ ଦେଇଥିଲେ । ମଲ୍ଲଯୁଦ୍ଧରେ ତାଙ୍କୁ ସେତେବେଳେ କେହି ପାରୁ ନ ଥିଲେ ।

ସେ ଜଗନ୍ନାଥ ମହାପ୍ରଭୁଙ୍କ ସେବାପୂଜା ଲାଗି ଅନେକ ଜମିବାଡ଼ି ଛାଡ଼ି ଦେଇଥିଲେ । ତାହାଙ୍କ ଅମଳରୁ ଜଗନ୍ନାଥ ମନ୍ଦିରରେ ମାଦଳା ପାଞ୍ଜିରେ

Digitized by srujanika@gmail.com

ଉତ୍କଳର ରାଜାମାନଙ୍କ ବିଷୟରେ ଲେଖା ଆରମ୍ଭ ହେଲା । ସେ ପୁରୀ ସହରରେ ନିଜ ନାଁରେ ଚୂଡ଼ଙ୍ଗ ସାହି ନାମରେ ବ୍ରାହ୍ମଣ ଶାସନଟିଏ ବସାଇଥିଲେ ।

## ରାଘେଶ୍ୱର ଦେବ—

ସେ ଚୋଡ଼ଗଙ୍ଗଙ୍କ ପୁଅ । ସେ ବଡ ଯୋଦ୍ଧା ଥିଲେ । ସେ ଅନେକ ରାଜ୍ୟ ଜିଣି ଉତ୍କଳ ସଙ୍ଗେ ମିଶାଇଥିଲେ । ମଧ୍ୟ-ପ୍ରଦେଶରେ ରତ୍ନପୁର ବୋଲି ଗୋଟିଏ ବିଖ୍ୟାତ ରାଜ୍ୟ ଥିଲା । ସେ ସେଠାର ରାଜାଙ୍କୁ ପରାସ୍ତ କରି ତାଙ୍କ ରାଜ୍ୟ ଛଡାଇ ନେଲେ । ଭୁବନେଶ୍ୱରଠାରୁ ଅଳ୍ପ ଦୂରରେ କୌଶଲ୍ୟାଗଙ୍ଗ ବୋଲି ଏକ ପ୍ରକାଣ୍ଡ ପୋଖରୀ ଅଛି । କୌଶଲ୍ୟା ବୋଲି ତାଙ୍କର ଗୋଟିଏ ଝିଅ; ଆଉ କୌଣସି ପୁଅ ନ ଥିଲେ । କୌଶଲ୍ୟା ଭାରି ରୂପବତୀ ଓ ଗୁଣବତୀ ଥିଲେ । ଅଳ୍ପ ବୟସରେ ସେ ମରିଯିବାରୁ ତାଙ୍କ ସ୍ମୃତିରକ୍ଷା ପାଇଁ କୌଶଲ୍ୟାଗଙ୍ଗ ଖୋଳା ହୋଇଥିଲା ।

## ଅନଙ୍ଗଭୀମଦେବ ( ୧୧୮୯—୧୨୨୩ )—

ଅନଙ୍ଗଭୀମ ଦେବ ଜଣେ ବଡ ବୀର । ତାଙ୍କର ବହୁତ ସୈନ୍ୟ ଥିଲେ । ଶତ୍ରୁମାନେ ଅନଙ୍ଗଙ୍କ ରାଜ୍ୟ ଭିତରେ ପଶିବାକୁ ସାହସ କରୁ ନ ଥିଲେ । ତାଙ୍କ ରାଜଧାନୀ ପ୍ରଥମେ ଚୌଦ୍ୱାରରେ ଥିଲା । ଯେତେବେଳେ ମୁସଲମାନ-ମାନେ ବଙ୍ଗ ଦେଶ ଆକ୍ରମଣ କଲେ । ବଙ୍ଗର ରାଜା ଲକ୍ଷ୍ମଣ ସେନ ପଳାଇ ଆସି ଅନଙ୍ଗଭୀମ ଦେବଙ୍କୁ ଶରଣ ମାଗିଲେ । ଅନଙ୍ଗଭୀମ ଅକାତରରେ ଓ ଆନନ୍ଦରେ ତାଙ୍କୁ ଶରଣ ଦେଲେ । ଲକ୍ଷ୍ମଣ ସେନ ତାଙ୍କର ଆଶ୍ରୟ ପାଇ ମରିବା ପର୍ଯ୍ୟନ୍ତ ପୁରୀରେ ସମସ୍ତ କାଟିଲେ । ଚୌଦ୍ୱାରରେ ମୁସଲମାନମାନେ ସହଜରେ ପଶିବା ପାଇଁ ସୁବିଧା ଥିଲା । ତେଣୁ ସେ ମହାନଦୀ କୂଳରେ କଟକର ବାରବାଟୀ କିଲ୍ଲାରେ ଦୁର୍ଗ ତୋଳିଲେ । ଦୁର୍ଗ ଚାରିପଟେ ଓସାରିଆ ଓ ଗହିରିଆ ଖାଇ ତିଆରି ହେଲା । ଖାଇ ବାଟେ ବାଟେ ମସ୍ତବଡ ପାଚେରି ବୁଲିଲା । ଭିତରେ ରାଜାଙ୍କର ନଅ ମହଲା କୋଠା ତିଆରି ହେଲା । ତାହାରେ

Digitized by srujanika@gmail.com

ଦରବାର, ଉଆସ, ପାଇକ ଘର, ହାତୀଶାଳ, ଘୋଡାଶାଳ ରହିଲା । ଦୁର୍ଗରୁ ବାହାରକୁ ଯିବାକୁ ଗୋଟିଏ ଫାଟକ ରହିଲା । ବାରବାଟୀ ନୂଆ ରାଜଧାନୀ ହେଲା ।

ତାହାଙ୍କର ଆଉ ଗୋଟିଏ କୀର୍ତ୍ତି ପୁରୀର ଜଗନ୍ନାଥଙ୍କ ବଡଦେଉଳ । ଚୋଳଗଙ୍ଗ ଦେବ ଏହି ଦେଉଳର ନିଅଁପୋତା ଆରମ୍ଭ କରିଥିଲେ । କିନ୍ତୁ ଅନଙ୍ଗଭୀମ ଦେବ ୧୫ ବର୍ଷ କାଳ ଲାଗି ଦେଉଳତୋଳା ସାରିଲେ ।



ପୁରୀ ମନ୍ଦିର

ସେ ଅନେକ ବ୍ରାହ୍ମଣଙ୍କୁ ଜମିବାଡ଼ ଖଞ୍ଜି ଦେଇଥିଲେ । ନିଜ ଦେହର ଓଜନ ତୁଳନାରେ ସୁନାରୁପା ବ୍ରାହ୍ମଣଙ୍କୁ ଦାନ କରିଥିଲେ ବୋଲି କଥା ଅଛି ।

Digitized by srujanika@gmail.com

## ଲଙ୍ଗୁଳା ନରସିଂହ ଦେବ—

ଲଙ୍ଗୁଳା ନରସିଂହ ଦେବ ଅନଙ୍ଗଭୀମଙ୍କ ପୁଅ । ଏହାଙ୍କ ରାଜ-ପୋଷାକର ପଛପଟେ ଅଣ୍ଟାରୁ ଗୋଟିଏ ଲଙ୍ଗୁଳ ପରି ଭୂଷଣ ଝୁଲୁଥିଲା । ତେଣୁ ଏହାଙ୍କୁ ଲଙ୍ଗୁଳା ନରସିଂହ କହୁଥିଲେ ।

ଲଙ୍ଗୁଳା ନରସିଂହ ଦେବ ଯୁଦ୍ଧରେ ସିଂହ । ସେ ଦକ୍ଷିଣରେ ଭୀମା ନଈକୂଳରେ ଥିବା କଲବର୍ଗା ଓ ବିଦର ଜୟ କରିଥିଲେ । ଉତ୍ତରରେ ପଶ୍ଚିମ ବଙ୍ଗ ବା ଗୌଡରାଜ୍ୟରୁ ଅଧେ ନିଜ ରାଜ୍ୟରେ ମିଶାଇଥିଲେ । ସେହି ଦିନଠାରୁ ଓଡ଼ିଶାର ଗଜପତିମାନଙ୍କର ଉପାଧିରେ 'ଗୌଡେଶ୍ୱର' ମିଶିଲା । ରାଜାମାନଙ୍କର ଉପାଧି ହେଲା—"ବୀର ଶ୍ରୀ ଗଜପତି ଗୌଡେଶ୍ୱର ନବକୋଟି କର୍ଣ୍ଣାଟୋତ୍କଳବର୍ଗେଶ୍ୱର ବୀରାଧିବୀରବର ।"

## କୋଣାର୍କ ସୂର୍ଯ୍ୟମନ୍ଦିର—

ନରସିଂହ ଦେବଙ୍କର ଆଉ ଏକ ପ୍ରଧାନ କୀର୍ତ୍ତି କୋଣାର୍କ ମନ୍ଦିର । ଏହା ପୁରୀର ଉତ୍ତର-ପୂର୍ବକୁ ୨୦ ମାଇଲ ଦୂରରେ ଅବସ୍ଥିତ । ଏହି ମନ୍ଦିର ୧୨୨୫ ଖ୍ରୀଷ୍ଟାବ୍ଦରେ ଆରମ୍ଭ ହୋଇ ୧୨୪୦ ଖ୍ରୀଷ୍ଟାବ୍ଦରେ ଶେଷ ହେଲା । ଏଥିରେ ବାରଶ ବଢେଇ କାମ କରୁଥିଲେ । ଏଥିରେ ଉତ୍କଳର ବାର ବର୍ଷର ଖଜଣା ପ୍ରାୟ ୪୦ କୋଟି ଟଙ୍କା ଖର୍ଚ୍ଚ ହୋଇଥିଲା । ସୂର୍ଯ୍ୟଙ୍କ ରଥ ପରି ଏହି କୋଣାର୍କ ଦେଉଳ ୨୪ଟି ଚକ ଉପରେ ଗଢା ହୋଇଥିଲା । ଭାରତରେ ଯେତେ ଦେଉଳ ଅଛି, ଏହା ସବୁଠାରୁ ଉଚ୍ଚ । କାରୁକାର୍ଯ୍ୟରେ ଏ ଦେଉଳଟି ସବୁଠାରୁ ସୁନ୍ଦର ହୋଇଥିଲା । ଏହାର ମୂଳରୁ ଚୂଳ ପର୍ଯ୍ୟନ୍ତ ଯେତେ ସେଉଁଠି ପଥର ଯୋଡା ହୋଇ ବସିଛି, କୌଣସିଥିରେ ଚୂନ ଦିଆଯାଇ ନାହିଁ ; ପଥରକୁ ପଥର ଘଷା ହୋଇ ବସିଛି । ଏବେ ବଡ ଦେଉଳଟି ଭାଙ୍ଗିଗଲାଣି । କେବଳ ମୁଖ-ଶାଳାଟି ଅଛି । ଯାହାସବୁ ଭଙ୍ଗା ଦଦରା ହୋଇ ପଡିଛି, ତାକୁ ଦେଖି ପୃଥିବୀର ସବୁ ଅଞ୍ଚଳର ଲୋକେ ଆଶ୍ଚର୍ଯ୍ୟ ହେଉଛନ୍ତି । ବଡ ଦେଉଳର ସବା ଉପର କଳସ ୫୭ ହଜାର ମହଣ ଓଜନ ଥିଲା । କୋଣାର୍କ ଦେଉଳର ଆଖପାଖରେ କୌଣସି ପାହାଡ କି ପଥର ଭୂଇଁ ନାହିଁ । ଏତେ ଏତେ ବଡ ପଥର ଓଡ଼ିଆ-ମାନେ କପରି କେଉଁଠୁ ଆଣିଲେ ଓ କପରି ଏତେ ଉପରକୁ ଉଠାଇଲେ,

Digitized by srujanika@gmail.com

ଏହା ଏକ ଆଶ୍ଚର୍ଯ୍ୟର ବିଷୟ । ଏହି ମନ୍ଦିରରେ ୨୪୦ ମହଣ ଓଜନର ଗୋଟିଏ ମୁଗୁନି ପଥରର ନବଗ୍ରହ ମୂର୍ତ୍ତି ଥିଲା । ଇଂରେଜ ସରକାର ସେହି ନବଗ୍ରହ ମୂର୍ତ୍ତିକୁ କଲିକତା ମିଉଜିଅମ୍‌କୁ ନେବାକୁ ଚେଷ୍ଟା କରିଥିଲେ; କିନ୍ତୁ ନେଇପାରିଲେ ନାହିଁ । ଶେଷରେ ତାକୁ ତିନି ଖଣ୍ଡ କଲେ; କିନ୍ତୁ ଖଣ୍ଡିଏ ବି ନେଇ ପାରିଲେ ନାହିଁ ।



କୋଣାର୍କ ଦେଉଳ

ଏହି ମନ୍ଦିର ତୋଳା ବିଷୟରେ ଗୋଟିଏ ଗପ — 'ବାରଶ ବଢେଇରେ ଧାର୍ମୀ କି ପୁଅରେ ଧାର୍ମୀ' ଶୁଣାଯାଏ । ଦେଉଳତୋଳା କାମ ଅନେକ

Digitized by srujanika@gmail.com

ଦିନ ଲାଗିବାରୁ ରାଜା ବିରକ୍ତ ହୋଇ ନିର୍ଦ୍ଦିଷ୍ଟ କେତେ ଦିନ ମଧ୍ୟରେ କାମ ଶେଷ କରିବାକୁ ହୁକୁମ ଦେଲେ । ରାଜା କହୁଥିବା ଶେଷ ଦିନ ମଧ୍ୟ କାମ ସରିଲା ନାହିଁ । ମୁଣ୍ଡିମରି କାମ ବାକି ଥାଏ । ରାଜାଙ୍କର ହୁକୁମ ଥାଏ ଯେ, ଯେ ଦିନ କାମ ନ ସରିଲେ ବାରଶ ବଢେଇ ଯାକ ଦଣ୍ଡ ପାଇବେ । ଗୋଟିଏ ବୁଢ଼ା କାରିଗରକୁ ଦେଖିବାକୁ ତାର ବାର ବରଷର ପୁଅଟିଏ ଦୈବାତ୍ ସେଠାକୁ ଆସିଥିଲା । ସେ ପିଲା କହିଲା – "ମୁଁ ଏକାକୀ ଦେଉଳର ମୁଣ୍ଡି ମାରିଦେବି ।" ସତକୁ ସତ ସେ ପିଲା ଏକାକୀ ସେହି ରାତିକ ଭିତରେ ଦେଉଳର ମୁଣ୍ଡି ମାରିଦେଲା । ଏ କଥା ଦେଖି ବାରଶ ବଢ଼ାଣି ଯାକ ଅବାକ୍ । ରାଜା ଏ କଥା ଶୁଣି ପାରିଲେ । ବାରଶ ବଢ଼ାଣି ଯାକ ଦଣ୍ଡ ପାଇବେ – ଏହି ଭୟ ସମସ୍ତଙ୍କୁ ଖାଇଲା । ବୁଢ଼ା କାରିଗର ବାରଶ ବଢେଇଙ୍କୁ ରଖିବାକୁ ଯାଇ ନିଜର ଏକ-ମାତ୍ର ପୁଅକୁ ମୂର୍ଚ୍ଛିଦେଲା । ପୁଅ ସ୍ୱ ଇଚ୍ଛାରେ ଦେଉଳ ଉପରୁ ଡେଇଁପଡି ପ୍ରାଣ ହରାଇଲା ।

ନରସିଂହ ଦେବଙ୍କ ପରେ ଆଉ ଏଗାର ଜଣ ରାଜା ରାଜୁତି କରି-ଥିଲେ । ତା ପରେ ସୂର୍ଯ୍ୟବଂଶର ରାଜାମାନେ ରାଜୁତି କଲେ ।

---

# ଉତ୍କଳର ସୂର୍ଯ୍ୟବଂଶ

ଗଙ୍ଗବଂଶର ଶେଷ ରାଜାଙ୍କର ପୁଅ ନ ଥିଲା । ସେ କପିଳେନ୍ଦ୍ର ଦେବଙ୍କୁ ପୁଅ କରି ତାଙ୍କ ପରେ ତାଙ୍କୁ ରାଜା କରିଦେଇ ଗଲେ । ଏହି କପିଳେନ୍ଦ୍ର ଦେବଙ୍କ ରାଜଗାଦି ପାଇବା ବିଷୟରେ ଗୋଟିଏ ଗଳ୍ପ ଶୁଣାଯାଏ ।

କପିଳେନ୍ଦ୍ର ଦେବଙ୍କ ନାଁ ପ୍ରଥମେ କପିଳ ଥିଲା । ସେ ଓଡ଼ିଶାର ସୂର୍ଯ୍ୟ-ବଂଶର ଗୋଟିଏ ଗରିବ କ୍ଷତ୍ରିୟର ପୁଅ । ପିଲାଦିନେ ଜଣେ ବ୍ରାହ୍ମଣ ଘରେ ସେ ଗାଈଆଳ ଚାକିରି କରୁଥିଲେ । ବ୍ରାହ୍ମଣର ପୁଅ କାଣିଆ କପିଳର ଖେଳ ସାଥୀ । ଦୁହେଁ ଏକାଠି ଗାଈ ଚରାନ୍ତି । ଦିନେ କପିଳ ଖରାରେ ହାଲିଆ ହୋଇ ଗଛ-

Digitized by srujanika@gmail.com

ମୂଳେ ଶୋଇପଡ଼ିଲା । ଗଛର ପତ୍ରର ଫାଙ୍କ ବାଟେ ତା ମୁହଁରେ ଛାଇ ପଡ଼ିଲା ।
ଏହି ସମୟରେ ଗୋଟିଏ ନାଗ ସାପ ଆସି ତା ମୁଣ୍ଡ ଉପରେ ଫଣା ଟେକି ଛାଇ କଲା । କାଶିଆ ବୁଲି ବୁଲି ଆସି ସେଠି ପହଞ୍ଚି ନାଗ ସାପକୁ ଦେଖିଲା । ସାପ ହଠାତ୍ ପଳାଇଲା । କାଶିଆ କପିଲାକୁ କହିଲା, "ତୁ ନିଶ୍ଚୟ ରାଜା ହେବୁ ।" ତହୁଁ କପିଳ ଥଟ୍ଟାରେ କହିଲା—'ମୁଁ ରାଜା ହେଲେ ତୋତେ ମନ୍ତ୍ରୀ କରିବି ।' ଏହାର କିଛିଦିନ ପରେ କପିଳ ଦିନେ ଜଗନ୍ନାଥଙ୍କ ବେଢ଼ାରେ ବୁଲୁ ବୁଲୁ ରାଜାଙ୍କ ଦୃଷ୍ଟିରେ ପଡ଼ିଲା । ତା ଦେହରୁ ରାଜା ବୁଝିଲେ, ତାଠାରେ ରାଜକଳା ଅଛି । ରାଜା କପିଳକୁ ନେଇ ଉଆସରେ ପୁଅ ପରି ବଢ଼ାଇଲେ । ପ୍ରଥମେ କପିଳ ରାଜାଙ୍କର ମନ୍ତ୍ରୀ ହେଲେ । କପିଳର ବିଚକ୍ଷଣ ବୁଦ୍ଧି ଦେଖି ରାଜା ଖୁସି ହେଲେ ଓ ତାଙ୍କ ପରେ କପିଳକୁ ରାଜା କରାଇ ଦେଲେ । କପିଳ ରାଜଗାଦିରେ ବସିବା ପରେ କପିଳେନ୍ଦ୍ର ବୋଲାଇଲେ ଏବଂ କାଶିଆକୁ ଡକାଇ ଆଣି ନିଜର ମନ୍ତ୍ରୀ କରାଇଲେ ।

କପିଳେନ୍ଦ୍ର ଦେବ ସୂର୍ଯ୍ୟ ବଂଶର ପ୍ରଥମ ରାଜା । ସେ ଭାରି ନାମଜାଦା ରାଜା ଥିଲେ । ତାଙ୍କ ନାଁ ଶୁଣିଲେ ଶତ୍ରୁମାନେ ଥରୁଥିଲେ । ସେ ଦକ୍ଷିଣରେ କାବେରୀ ନଈ ପର୍ଯ୍ୟନ୍ତ ରାଜ୍ୟ ଜିଣିଥିଲେ । ତାଙ୍କର ବହୁତ ସୈନ୍ୟ ଥିଲେ । ସେ ପୁରୀ ଜଗନ୍ନାଥ ଦେଉଳର ବାହାର ବେଢ଼ା ତିଆରି କରାଇଥିଲେ ।

## ପୁରୁଷୋତ୍ତମ ଦେବ—

କପିଳେନ୍ଦ୍ର ଦେବଙ୍କର ଅଠର ପୁଅ ଥିଲେ । ଏହା ଛଡ଼ା ତାଙ୍କର ଗୋଟିଏ ଦାସୀ ଗର୍ଭରୁ ଆଉ ଗୋଟିଏ ପୁଅ ଜନ୍ମ ହୋଇଥିଲା । ତାଙ୍କ ନାଁ ପୁରୁଷୋତ୍ତମ ଦେବ । ପୁରୁଷୋତ୍ତମ ଦେବଙ୍କଠାରେ ରାଜଲକ୍ଷଣ ଓ ସୁଗୁଣ ଦେଖି ତାଙ୍କ ଅନ୍ତେ ତାଙ୍କୁ ସେ ରାଜା କରିଦେଲେ । ପୁରୁଷୋତ୍ତମ ଦେବ ଶାନ୍ତିରେ ରାଜଗାଦିରେ ବସିପାରିଲେ ନାହିଁ । ତାଙ୍କ ଅଠର ଭାଇଯାକ ବିଦ୍ରୋହୀ ହୋଇ ଗୋଳମାଳ କଲେ । କିନ୍ତୁ ପୁରୁଷୋତ୍ତମ ଦେବ ବଡ଼ ଯୋଦ୍ଧା ଓ ବୁଦ୍ଧିମାନ୍ । ସେ ଅକ୍ଳେଶରେ ଭାଇମାନଙ୍କୁ ଜବତ୍ କଲେ । ସେମାନଙ୍କ ଭିତରୁ

Digitized by srujanika@gmail.com

କେତେକଙ୍କୁ ଗଡଜାତ ଭିତରେ ସାମନ୍ତ ରାଜା କରାଇ ଦେଲେ । ଦାକ୍ଷିଣାତ୍ୟରେ କାଞ୍ଚିବିଜୟ ତାଙ୍କ ରାଜତ୍ୱର ପ୍ରସିଦ୍ଧ ଘଟଣା ।



କାଞ୍ଚି ରାଜାଙ୍କର ପଦ୍ମାବତୀ ନାଁରେ ଗୋଟିଏ ଝିଅ ଥିଲା । ପଦ୍ମାବତୀଙ୍କୁ ପୁରୁଷୋତ୍ତମ ଦେବଙ୍କୁ ବିବାହ ଦେବାକୁ କାଞ୍ଚି ରାଜା ମନସ୍ଥ କରିଥିଲେ । ସେ ପରେ ଶୁଣିଲେ, ଉତ୍କଳର ଗଜପତି ଶ୍ରୀ ଗୁଣ୍ଡିଚା ଦିନ ଜଗନ୍ନାଥଙ୍କ ରଥ ପାଖରେ ଛେରା ପହଁରା କରନ୍ତି । ଛେରା ପହଁରା ଚଣ୍ଡାଳର କାମ ବୋଲି ସେ ତାଙ୍କୁ ଝିଅ ଦେବାକୁ ରାଜି ହେଲେ ନାହିଁ । ପୁରୁଷୋତ୍ତମ ଦେବ କାଞ୍ଚିରାଜାଙ୍କ ଗର୍ବ ଖର୍ବ

Digitized by srujanika@gmail.com

କରିବାକୁ ବହୁତ ସୈନ୍ୟ ନେଇ କାଞ୍ଚି ଗଲେ । କାଞ୍ଚି ରାଜା ମଧ୍ୟ କମ୍ ବୀର ନୁହନ୍ତି । ଭୀଷଣ ଯୁଦ୍ଧ ହେଲା । ପ୍ରଥମେ ପୁରୁଷୋତ୍ତମ ଦେବ ହାରି ଯାଇଥିଲେ । କିନ୍ତୁ ଶେଷରେ ସେ କାଞ୍ଚିରାଜାଙ୍କୁ ଯୁଦ୍ଧରେ ଜିଣି ପଦ୍ମାବତୀଙ୍କୁ ବନ୍ଦୀ କରି ଆଣିଲେ । କାଞ୍ଚି ରାଜା ତାଙ୍କୁ ଚଣ୍ଡାଳ ସଙ୍ଗେ ସମାନ କରିଥିବାରୁ ସେ ତାଙ୍କ ଝିଅ ପଦ୍ମାବତୀଙ୍କୁ ଚଣ୍ଡାଳ ସଙ୍ଗେ ବିବାହ ଦେବାକୁ ସ୍ଥିର କଲେ । ପଦ୍ମାବତୀ ବନ୍ଦିନୀ ହୋଇ ଥାନ୍ତି । କିଛିଦିନ ପରେ ଜଗନ୍ନାଥଙ୍କ ଶ୍ରୀଗୁଣ୍ଡିଚା ପଡ଼ିଲା । ରାଜା ଛେରାପହଁରା କରୁଥିବା ବେଳେ ତାଙ୍କ ମନ୍ତ୍ରୀ ପଦ୍ମାବତୀଙ୍କୁ ସାଥୀରେ ନେଇ ରାଜାଙ୍କ ପାଖରେ ଠିଆ କଲେ ଏବଂ କହିଲେ, "ହାମୁ ଏବେ ଚଣ୍ଡାଳ । ହାମୁଙ୍କ ପ୍ରତିଜ୍ଞା ଅନୁସାରେ ହାମୁଙ୍କୁ ମୁଁ ଏବେ ପଦ୍ମାବତୀଙ୍କି ବିବାହ ଦେଉଛି ।" ପୁରୁଷୋତ୍ତମ ଦେବ ମନ୍ତ୍ରୀଙ୍କ ବିଚକ୍ଷଣତା ଦେଖି ତାଙ୍କୁ ମନେ ମନେ ପ୍ରଶଂସା କଲେ ଏବଂ ପଦ୍ମାବତୀଙ୍କୁ ବିବାହ କଲେ ।

## ପ୍ରତାପରୁଦ୍ର ଦେବ—

ପ୍ରତାପରୁଦ୍ର ପୁରୁଷୋତ୍ତମ ଦେବଙ୍କ ପୁଅ । ସେ ଭାରି ପ୍ରତାପୀ ରାଜା ଥିଲେ । ତାଙ୍କ ରାଜତ୍ୱ କାଳରେ ପଠାଣମାନେ ଉତ୍କଳ ଆକ୍ରମଣ କରିବାକୁ ଦୁଇ ଥର ଆସିଥିଲେ । ସେ ଦାକ୍ଷିଣାତ୍ୟରେ ଯୁଦ୍ଧ କରୁଥିବା ବେଳେ ସେମାନେ ସୁଯୋଗ ଦେଖି ଓଡ଼ିଶାକୁ ଆସନ୍ତି; କିନ୍ତୁ ପ୍ରତାପଙ୍କ ଫେରିବା ଖବର ପାଇ ଡରି ପଳାନ୍ତି । ଶେଷରେ ପଠାଣଙ୍କ ସଙ୍ଗେ ତାଙ୍କର ଥରେ ଲଢେଇ ହେଲା । ଅନେକ ପଠାଣ ସୈନ୍ୟ ମଲେ । ଶେଷରେ ହାରି ମାନି ପଠାଣ ସୈନ୍ୟମାନେ ପଳାଇ-ଗଲେ । ପ୍ରତାପ ବଞ୍ଚିଥିବାଯାଏ ଆଉ ସେମାନେ ଓଡ଼ିଶାକୁ ଆସିବାକୁ ସାହସ କଲେ ନାହିଁ । ନବଦ୍ୱୀପର ଚୈତନ୍ୟଦେବ ପ୍ରତାପଙ୍କ ଅମଳରେ ୧୫୧୦ ଖ୍ରୀଷ୍ଟାବ୍ଦରେ ଓଡ଼ିଶାକୁ ଆସିଥିଲେ । ପ୍ରତାପ ଚୈତନ୍ୟଙ୍କଠାରୁ ଧର୍ମ ଗ୍ରହଣ କଲେ ଓ ସନ୍ନ୍ୟାସୀଙ୍କ ପରି ଦିନ କାଟିଲେ । ଓଡ଼ିଶାରେ ଚୈତନ୍ୟଙ୍କ ଧର୍ମ ପ୍ରଚାର ଲାଗି ସେ ବହୁତ ଟଙ୍କା ଖର୍ଚ୍ଚ କଲେ । ଚୈତନ୍ୟ-ଧର୍ମ ଗ୍ରହଣ କଲାଦିନୁ ସେ ଦେଶ-ବିଜୟରେ ଆଉ ମନ ବଳାଇଲେ ନାହିଁ —ଯୁଦ୍ଧ ତାଙ୍କୁ ଆଉ ସୁଖ ଲାଗିଲା ନାହିଁ । ପ୍ରଜାମାନେ ମଧ୍ୟ ଯୁଦ୍ଧ ଛାଡି ଭକ୍ତିରେ ମାତିଲେ । ଓଡ଼ିଶାରେ ଧର୍ମ-

Digitized by srujanika@gmail.com

ଘ୍ବ ବଡି଼ଲ୍ ସତ; କିନ୍ତୁ ଲୋକଙ୍କର ଯୁଦ୍ଧ କରିବା ପ୍ରବୃତ୍ତି କମିଗଲ୍ ; ନିକଟ ଭବିଷ୍ୟତରେ ଉତ୍କଳ ଶତ୍ରୁମାନଙ୍କ ପାଖରେ ହାର ମାନିବାର ବାଟ ଫିଟିଲା । ପ୍ରତାପଙ୍କ ଅମଳରେ ଜଗନ୍ନାଥ ଦାସ ଭାଗବତ ଓ ବଳରାମ ଦାସ ରାମାୟଣକୁ ଓଡ଼ିଆ ଭାଷାରେ ଲେଖିଥିଲେ ।

ଜଗନ୍ନାଥ ଦାସଙ୍କ ଓଡ଼ିଆ ଭାଗବତ ଆଜ ଓଡ଼ିଶାର ଘରେ ଘରେ ପୂଜା ଯାଉଅଛି ।

ଇଉରୋପର ପର୍ତ୍ତୁଗିଜ୍‌ମାନେ ଭାରତକୁ ଆସି ଉତ୍କଳରେ ବାଣିଜ୍ୟ କରିବା ପାଇଁ ପ୍ରତାପରୁଦ୍ରଙ୍କଠାରୁ ଅନୁମତି ନେଇଥିଲେ ।

---

## ସଂସ୍କାରକରଣ

ମୁସଲମାନ ଶାସନ ଫଳରେ ଦେଶରେ ଠାଏ ଠାଏ ଲୋକେ ହିନ୍ଦୁ ଧର୍ମ ଛାଡ଼ି ପଠାଣ ହେଉଥିଲେ । କିନ୍ତୁ ସବୁବେଳେ ଯେ ଏପରି ହେଉଥିଲା, ତାହା ନୁହେଁ । ପୂର୍ବେ ବ୍ରାହ୍ମଣମାନେ ନୀଚ ଜାତିର ହିନ୍ଦୁଙ୍କୁ ଧର୍ମ ବିଷୟରେ ଶିକ୍ଷା ଦେବାକୁ କିଛି ସୁବିଧା କରି ନ ଥିଲେ । ସେମାନେ ଯେଉଁ ଅନ୍ଧାରରେ ପଡ଼ି ସଡ଼ୁଥିଲେ, ସେହି ଅନ୍ଧାରରେ ରହିଥିଲେ । ଏପରି କି ସେମାନଙ୍କୁ ଛୁଇଁଦେଲେ ପାପ ହେଉଥିଲା ବୋଲି ମନେ କରୁଥିଲେ । ରାଜାଙ୍କ ଧର୍ମ ଗ୍ରହଣ କଲେ ହିନ୍ଦୁମାନେ ଆଉ ଘୃଣା କରିବେ ନାହିଁ, ଏହି ବିଶ୍ୱାସରେ ନୀଚ ଜାତିର ଅନେକ ହିନ୍ଦୁ ମୁସଲମାନ ହୋଇଗଲେ ।

ଦେଶର ଏହି ଅବସ୍ଥାରେ କେତେ ଜଣ ମହାପୁରୁଷ ଜାତିଭେଦ ନ ମାନି ସବୁଶ୍ରେଣୀର ଲୋକଙ୍କୁ ଧର୍ମଶିକ୍ଷା ଦେବାକୁ ଲାଗି ପଡ଼ିଥିଲେ । ସେମାନଙ୍କ ମଧ୍ୟରେ ରାମାନନ୍ଦ, କବୀର, ନାନକ, ରାମାନୁଜ ଓ ଚୈତନ୍ୟ ପ୍ରଧାନ ।

Digitized by srujanika@gmail.com

**ରାମାନନ୍ଦ—**

ସେ ୧୩୬୦ ଖ୍ରୀଷ୍ଟାବ୍ଦରେ କେତେଗୁଡ଼ିଏ ଶିଷ୍ୟ କଲେ । ସବୁ ଲୋକଙ୍କୁ ସେ ଏକା ପରି ଦେଖୁଥିଲେ । କି ଉଚ୍ଚ କି ନୀଚ ସବୁ ଜାତିର ଲୋକ ତାଙ୍କର ଶିଷ୍ୟ ହୋଇଥିଲେ । କବୀର ନାମରେ ଜଣେ ତନ୍ତୀ ତାଙ୍କର ଶିଷ୍ୟ । ସେ ଦେଶର ସବୁଆଡ଼େ ବୁଲି ବୈଷ୍ଣବ ମତ ପ୍ରଚାର କରିଥିଲେ । ସେ ହିନ୍ଦୀ ଭାଷାରେ ଅନେକ ଧର୍ମପୁସ୍ତକ ଲେଖିଛନ୍ତି । ତାଙ୍କର ଶିଷ୍ୟମାନେ ଈଶ୍ୱରଙ୍କୁ "ରାମ" ବୋଲି ଉପାସନା କରୁଥିଲେ ।

**କବୀର—**

କବୀର ରାମାନନ୍ଦଙ୍କର ଶିଷ୍ୟ । ସେ ଲୋକଙ୍କୁ ଏଭଳି ଉପଦେଶ ଦେଲେ ଯେ, କି ହିନ୍ଦୁ କି ମୁସଲମାନ ସମସ୍ତେ ତାଙ୍କର ଶିଷ୍ୟ ହେଲେ । ସେ କହୁଥିଲେ, 'ଆଲ୍ଲା' ଓ 'ରାମ' ଏକ; ଦୁଇ ନୁହନ୍ତି । କେବଳ ଭିନ୍ନ ଭିନ୍ନ ଭାଷାରୁ ଭିନ୍ନ ଭିନ୍ନ ନାମ ହୋଇଅଛି । ସେ ମଲାବେଳେ ହିନ୍ଦୁ ଓ ମୁସଲମାନ ଉଭୟେ ତାଙ୍କ ମଲା ପିଣ୍ଡକୁ ଦାବୀ କରିଥିଲେ ।

**ନାନକ—**

ସେ ୧୪୬୯ ଖ୍ରୀଷ୍ଟାବ୍ଦରେ ପଞ୍ଜାବରେ ଜନ୍ମ ହୋଇଥିଲେ । ସେ ଜାତିରେ କ୍ଷତ୍ରିୟ । ପିଲାଦିନୁ ସେ ସନ୍ନ୍ୟାସୀମାନଙ୍କ ସଙ୍ଗେ ମିଶିବାକୁ ଭଲ ପାଉଥିଲେ । ତାଙ୍କର ଏଭଳି ସ୍ୱଭାବ ଦେଖି ତାଙ୍କ ବାପା ଦିନେ କହିଲେ— "ଆରେ ବାବା, ତୋ କଥା ତୁ ବୁଝ, ମୁଁ ତୋତେ ଚଳାଇ ପାରିବି ନାହିଁ ।" ଏଥିରେ ନାନକ ମାନ କରି ଘର ଛାଡି ଚାଲିଯାଇ ଭଉଣୀ ଘରେ ରହିଲେ । ସେଠାରେ ତାଙ୍କ ଭଉଣୀ ତାଙ୍କୁ ବିବାହ କରାଇଦେଲେ । ତାଙ୍କର ଦିଓଟି ପୁଅ ହେଲେ । କିନ୍ତୁ ସଂସାର ଧନ୍ଦା ତାଙ୍କୁ ଭଲ ଲାଗୁ ନ ଥାଏ । ଦିନେ ସେ ଘର ଛାଡି କୁଆଡେ ଚାଲିଗଲେ ଓ ଅନେକ ତୀର୍ଥସ୍ଥାନ ବୁଲି ଦେଖିଲେ । ଦିନେ ସେ ମକ୍କା ସହରରେ ପଠାଣଙ୍କ ମସଜିଦ୍ ଆଡକୁ ଗୋଡ କରି ଶୋଇଥିଲେ । ଏହି ସମୟରେ ଜଣେ ପଠାଣ ଆସି ତାଙ୍କୁ ବହୁତ ଗାଳି ଦେଇ କହିଲେ, "ଏ କଣ ଆମର ଧର୍ମମନ୍ଦିର ବୋଲି ତୋତେ ଜଣା ନାହିଁ ? ତୁ ସେ ଆଡକୁ ଗୋଡକରି ଶୋଇଛୁ !" ଏ କଥା ଶୁଣି ନାନକ କହିଲେ--"ଯେଉଁ ଆଡେ

Digitized by srujanika@gmail.com

ଦେବତା ନାହାନ୍ତି, ସେ ଆଡକୁ ମୋ ଗୋଡଦୁଇଟା ଟାଣି ରଖି ଦିଅନ୍ତୁ ।"
ଏଥିରେ ପଠାଣ ବିଚାରର ବୁଦ୍ଧି ବଣା ହୋଇଗଲା । ସେ କିଛି ଉତ୍ତର କରି ନ ପାରି ଗ୍ଭଲିଗଲା । ତତ୍ପରେ ନାନକ ନିଜ ଦେଶକୁ ଫେରି ଆସି କି ହିନ୍ଦୁ କି ମୁସଲମାନ ସବୁ ଜାତିର ଲୋକଙ୍କୁ ନିଜର ଶିଷ୍ୟ କଲେ ।

ତାଙ୍କ ପ୍ରବର୍ତ୍ତିତ ଧର୍ମର ନାମ ଶିଖ୍ ଧର୍ମ । ତାଙ୍କ ଧର୍ମର ପ୍ରଧାନ କଥା— ଈଶ୍ୱର ଏକ; ଦୁଇ ନୁହନ୍ତି । ପୁଣି କାର୍ଯ୍ୟ କଲେ ଓ ନିଜର ଚରିତ୍ର ଭଲ ରଖିଲେ ଭଗବାନ ସନ୍ତୁଷ୍ଟ ହୁଅନ୍ତି ।

**ଚୈତନ୍ୟ—**

ଜଗନ୍ନାଥ ମିଶ୍ର ନାମରେ ଉତ୍କଳର ଜଣେ ବ୍ରାହ୍ମଣ ବଙ୍ଗଳାର ନବଦ୍ୱୀପରେ ବାସ କରୁଥିଲେ । ତାଙ୍କର ପୁଅ ଚୈତନ୍ୟ । ଚୈତନ୍ୟ ୧୪୧୫ରେ ଜନ୍ମଗ୍ରହଣ କରିଥିଲେ । ସେ ବିବାହ କରିଥିଲେ; କିନ୍ତୁ ତାଙ୍କର ମନ ଘରେ ଲାଗିଲା ନାହିଁ । ସେ ୨୪ ବର୍ଷ ବୟସରେ ଘର ଛାଡି ବୈଷ୍ଣବ ଧର୍ମ ପ୍ରଚାର କରିଥିଲେ । କେତେକ ମୁସଲମାନ ତାଙ୍କର ଶିଷ୍ୟତ୍ୱ ଗ୍ରହଣ କରିଥିଲେ । ତାଙ୍କର କୋମଳ ବଚନ, ସୁନ୍ଦର ଚେହେରା ଓ ମଧୁର ଉପଦେଶରେ ଶତ୍ରୁ ସୁଦ୍ଧା ମିତ୍ର ହୋଇଯାଉଥିଲେ । ମୁସଲମାନମାନେ ମଧ୍ୟ ତାଙ୍କୁ ଶାସ୍ତି ଦେବାକୁ ଆସି ତାଙ୍କୁ ଦେଖିଲା ମାତ୍ରେ ଦଣ୍ଡ ନ ଦେଇ ବାହୁଡି ଯାଉଥିଲେ । ବଙ୍ଗଳାରେ ଓ ଉତ୍କଳରେ ତାଙ୍କର ଧର୍ମ ପ୍ରବର୍ତ୍ତିତ ହୋଇଥିଲା । ସେ ଶ୍ରୀକ୍ଷେତ୍ର ପୁରୀରେ ଜୀବନର ବହୁତ ସମୟ ରହି ସେଠାରେ ମରିଥିଲେ । ବୈଷ୍ଣବମାନେ ତାଙ୍କୁ ଈଶ୍ୱରଙ୍କର ଏକ ଅବତାର ବୋଲି କହନ୍ତି । ପୁରୀ ବଡଦେଉଳ ହତା ମଧ୍ୟରେ ଶଂଖମଲମଲ ପଥରରେ ତାଙ୍କର ପଦଚିହ୍ନ ଅଛି ।

**ଜଗନ୍ନାଥ ଦାସ—**

ସେ ଜଣେ ଓଡିଆ ବ୍ରାହ୍ମଣ । ଚୈତନ୍ୟଙ୍କ ସହି ତାଙ୍କର ଦେଖା ହୋଇଥିଲା । ତା ପରେ ସେ ତାଙ୍କର ଶିଷ୍ୟ ହେଲେ । ତାଙ୍କ ରଚିତ ଓଡିଆ ଶ୍ରୀମଦ୍ଭାଗବତ ଓଡିଶାର ଘରେ ଘରେ ପଢା ହୁଏ । ସେ ସବୁଠାରେ ବୈଷ୍ଣବମତ ପ୍ରଚାର କରିଥିଲେ । ସେ ଉତ୍କଳର ପଞ୍ଚସଖା ମଧ୍ୟରୁ ଜଣେ । ଉତ୍କଳରେ ସେ ଅତିବଡ ଜଗନ୍ନାଥ ନାମରେ ପରିଚିତ । ପୁରୀରେ ବହୁତ ସମୟ ରହି ଶେଷରେ ସେଠାରେ ସେ ଇହଲୀଳା ସମ୍ବରଣ କଲେ ।

Digitized by srujanika@gmail.com

# ମୋଗଲ ସାମ୍ରାଜ୍ୟ

**ବାବର୍—**

୧୫୨୬ ଖ୍ରୀଷ୍ଟାବ୍ଦରେ ଇବ୍ରାହିମ ଲୋଦିଙ୍କଠାରୁ ଭାରତର ପଠାଣ ରାଜତ୍ୱ ଶେଷ ହୋଇ ମୋଗଲ ରାଜତ୍ୱ ଚାଲିଲା । ମୋଗଲମାନେ ଏହି ଦେଶକୁ ମୋଟେ ଶହେ ବର୍ଷ ଶାସନ କରିଥିଲେ । ବାବର ହେଉଛନ୍ତି, ମୋଗଲ ବଂଶର ପ୍ରଥମ ସମ୍ରାଟ । ବାବର ତୈମୁରଙ୍କ ବଂଶରେ ଜନ୍ମ । ତୁର୍କୀ ଭାଷାରେ ବାବର ଶବ୍ଦର ଅର୍ଥ ସିଂହ । ପ୍ରକୃତରେ ବଳ, ସାହସ ଓ ଧୈର୍ଯ୍ୟରେ ବାବର ସିଂହ ପରି ଥିଲେ ।

ପିଲାଦିନୁ ବାବର ବହୁତ ଦୁଃଖକଷ୍ଟ ସହିଥିଲେ । ତାଙ୍କ ପିତା ଫରଗନା ବୋଲି ଏକ ରାଜ୍ୟର ରାଜା ଥିଲେ । ବାବରଙ୍କୁ ବାର ବର୍ଷ ବୟସ ବେଳେ ସେ ମରିଗଲେ । ତେଣୁ ଫରଗନା ରାଜ୍ୟକୁ ବାଣ୍ଟି ଲୁଣ୍ଠି ନେଇଯିବା ପାଇଁ ତାଙ୍କର ଜାତି ଭାଇମାନେ ଅନେକ ଯୁଦ୍ଧ ଗୋଳମାଳ ଲଗାଇଲେ । କେତେ ଥର ଯୁଦ୍ଧ କରି ବାବର ହାରିଲେ । ନିଜ ଦେଶରେ ତାଙ୍କୁ ଆଶ୍ରୟ ମିଳିଲା ନାହିଁ । ସେହି ସମୟକୁ ଆଫଗାନସ୍ଥାନରେ କେହି ଠାଣୁଆ ରାଜା ନ ଥିଲେ । ବାବର କେତେକ ବିଶ୍ୱାସୀ ସୈନ୍ୟ ଧରି ସେ ରାଜ୍ୟରେ ପହଞ୍ଚିଲେ । ଅଳ୍ପଦିନ ମଧ୍ୟରେ ସେଠା ରାଜାକୁ ତଡ଼ି ସେଠାରେ ରାଜା ହୋଇଗଲେ ।

ବାବର ପିଲାଦିନୁ ଶୁଣିଥିଲେ ଯେ, ଭାରତବର୍ଷ ଭାରି ବଡ଼ ଓ ଉର୍ବର ଦେଶ । ପୁଣି ତାଙ୍କର ବଂଶର ତୈମୁର ଭାରତ ଜିଣିଥିଲେ । ଏଥିପାଇଁ ସେ ଭାରତକୁ ଜିଣିବା ଲାଗି ଅନେକ ଦିନୁ ମନ ବଳାଇଥିଲେ । ଆଫଗାନ-ସ୍ଥାନରେ କେତେ ବର୍ଷ ରାଜୁତି କଲା ପରେ ସେ ଭାରତବର୍ଷ ଆଡ଼କୁ ଆଖି ପକାଇଲେ ।

ଠିକ୍ ଏପରି ସମୟକୁ ଇବ୍ରାହିମ ଲୋଦି ନାଁକୁ ମାତ୍ର ରାଜା ବୋଲାଇ ଦିଲ୍ଲୀରେ ଥିଲେ । ହିନ୍ଦୁ ପଠାଣଙ୍କ ଭିତରେ କଳି ଲାଗିଥିଲା । ରାଜପୁତମାନ-ଙ୍କର କ୍ଷମତା ବଢ଼ିଥିଲା । ରାଜପୁତ ରାଜା ସଂଗ୍ରାମ ସିଂହ ପଠାଣମାନଙ୍କୁ

Digitized by srujanika@gmail.com

ତଡ଼ ଦିଲ୍ଲୀ ଅଧିକାର ପାଇଁ ନାନା ଉଦ୍ୟମ କରୁଥିଲେ । ଇବ୍ରାହିମ ଲୋକଙ୍କୁ କେହି ଭଲ ପାଉ ନ ଥିଲେ । ତାଙ୍କୁ ଦିଲ୍ଲୀ ଗାଦିରୁ ଉଠାଇଦେବା ପାଇଁ ପଞ୍ଜାବର ପଠାଣ ଶାସନକର୍ତ୍ତା ଓ କେତେ ଜଣ ରାଜପୁତ ବାବରଙ୍କ ସାହାଯ୍ୟ ଲୋଡ଼ିଲେ । ବାବର ଏ ସୁଯୋଗ ଛାଡ଼ିଲେ ନାହିଁ । ସଙ୍ଗେ ସଙ୍ଗେ ଅସଂଖ୍ୟ ସୈନ୍ୟ ଧରି ଆସି ଦିଲ୍ଲୀ ଆକ୍ରମଣ କଲେ । ଦିଲ୍ଲୀଠାରୁ ପଚାଶ ମାଇଲ ଦୂରରେ ପାନିପଥ ବୋଲି ଏକ ସ୍ଥାନରେ ବାବର ଓ ଇବ୍ରାହିମଙ୍କ ମଧ୍ୟରେ ୧୫୨୬ ଖ୍ରୀଷ୍ଟାବ୍ଦରେ ଭୟଙ୍କର ଯୁଦ୍ଧ ହେଲା । ଇବ୍ରାହିମ ମଲେ; ତାଙ୍କ ସୈନ୍ୟମାନେ ହାରିଗଲେ । ବାବର ଦିଲ୍ଲୀ ଓ ଆଗ୍ରା ଅଧିକାର କରି ଭାରତର ସମ୍ରାଟ୍ ହେଲେ । ଏହା ପରବର୍ଷ ସିକ୍ରୀ ବୋଲି ଏକ ସ୍ଥାନରେ



ରାଜପୁତ ରାଜା ସଂଗ୍ରାମ ସିଂହ ଓ ବାବରଙ୍କ ମଧ୍ୟରେ ପୁଣି ଏକ ଯୁଦ୍ଧ ହେଲା । ସଂଗ୍ରାମ ଭାବିଥିଲେ ଯେ, ବାବର ଇବ୍ରାହିମଙ୍କୁ ତଡ଼ି ନିଜ ରାଜ୍ୟକୁ ଚାଲିଯିବେ । ମାତ୍ର ସେ ଯେତେବେଳେ ଦିଲ୍ଲୀରେ ଗାଦି ମାଡ଼ି ବସିଲେ, ତାଙ୍କ ବିରୁଦ୍ଧରେ ଏ ଉଠିଲେ । ଏ ଯୁଦ୍ଧରେ ସଂଗ୍ରାମ ସିଂହ ଓ ଆଉ ୧୦୪ ଜଣ ହିନ୍ଦୁରାଜା ହାରିଯିବାରୁ ବାବରଙ୍କର କ୍ଷମତା ଆହୁରି ବଢ଼ିଗଲା ।

ବାବର ପଣ୍ଡିତ ଥିଲେ । ସେ କେବଳ ଲଢ଼ୁଆ ନ ଥିଲେ, କି ଗାଁ ଗଣ୍ଡା ଲୁଟି କରୁ ନ ଥିଲେ । ସୁଖରେ ରାଜ୍ୟ ପାଳିବା ତାଙ୍କର ଇଚ୍ଛା ଥିଲା । ଛୋଟା ତୈମୁରଙ୍କ ପରି ସେ ନିଷ୍ଠୁର ନ ଥିଲେ । ତାଙ୍କ ଦେହରେ ଅସୀମ ବଳ ଥିଲା । ଘୋଡ଼ାରେ ବସି ଦିନକେ ଶହେ ମାଇଲ ବାଟ ସେ ଯାଇପାରୁଥିଲେ । ଖୁବ୍ ବଳଶାଳୀ ଦୁଇ ଜଣ ଲୋକଙ୍କୁ ଦୁଇ କାଖରେ ଯାକି ସେ ଅଣଓସାରିଆ ପାଚେରି ଉପରେ ଧାଇଁପାରୁଥିଲେ । ତାଙ୍କ ହୃଦୟ ବଡ଼

Digitized by srujanika@gmail.com

ସରଳ ଥିଲା । ସେ ନିଜେ ଗୀତ ଲେଖି ଗୀତ ଗାଇ ଜାଣୁଥିଲେ । ସେ ନିଜର ଜୀବନ କଥା ବହି ଆକାରରେ ଲେଖିଯାଇଛନ୍ତି । ସେଥିରେ ସେ ନିଜ ଦୋଷଗୁଣ କଥା ସବୁ ଲେଖିଛନ୍ତି ।

ଦିଲ୍ଲୀ ଅଧିକାର କରିବାର ସ୍ୱଳ୍ପ ବର୍ଷ ପରେ ବାବରଙ୍କର ମୃତ୍ୟୁ ହେଲା । ତାଙ୍କ ମୃତ୍ୟୁ ବିଷୟରେ ଗୋଟିଏ ସୁନ୍ଦର କଥା ଅଛି । ବଡପୁଅ ହୁମାୟୁନଙ୍କର ଦେହ ଖରାପ ହେଲା । କେତେ ବୈଦ୍ୟ ଦେଖିଲେ, କେତେ ଚିକିତ୍ସା ହେଲା, କାହିଁରେ ହେଲେ ଭଲ ହେଲା ନାହିଁ । ହୁମାୟୁନଙ୍କୁ ସେ ପ୍ରାଣରୁ ବଳି ଭଲ ପାଉଥିଲେ । ଦିନେ ସେ ଅତି ବ୍ୟାକୁଳ ହୋଇ ପୁଅର ରୋଗଶେଯ ଚାରିପାଖେ ହାତ ଯୋଡି ବୁଲି ବୁଲି ଈଶ୍ୱରଙ୍କୁ ପ୍ରାର୍ଥନା କରି କହୁଥିଲେ, "ପ୍ରଭୁ ହେ, ହୁମାୟୁନକୁ ଭଲ କରିଦେଇ ତାର ରୋଗ ମତେ ଦିଅ ।" ବଡ ଆଶ୍ଚର୍ଯ୍ୟର କଥା, ଏହି ଘଟଣା ପରେ ହୁମାୟୁନ କ୍ରମେ ଭଲ ହୋଇ ଆସିଲେ, ବାବର ରୋଗରେ ପଡି ପ୍ରାଣତ୍ୟାଗ କଲେ ।

**ହୁମାୟୁନ —**

ତେଇଶ ବର୍ଷ ବୟସରେ ହୁମାୟୁନ ରାଜା ହେଲେ । ତାଙ୍କର ଆଉ ତିନି ଭାଇ ଥିଲେ । ସେମାନଙ୍କୁ ସେ ଭାରି ଭଲ ପାଉଥିଲେ । ରାଜା ହେଲା ପରେ ସେ ସବୁ ଭାଇଙ୍କୁ ଖଣ୍ଡିଏ ଖଣ୍ଡିଏ ରାଜ୍ୟ ଦେଲେ । କାମରାନ୍ ବୋଲି ତାଙ୍କର ଜଣେ ଭାଇ କାବୁଲ ଓ ପଞ୍ଜାବ ରାଜ୍ୟ ପାଇଲେ ।

ହୁମାୟୁନଙ୍କର ସାହସ ଥିଲା; ମାତ୍ର ଉଦ୍‌ଯୋଗ ନ ଥିଲା । ଶେଷକୁ ସେ ବଡ ଆଳସୀ ହୋଇ ପଡିଲେ । ଅଫିମ ଓ ମଦ ଖାଇବାରୁ ତାଙ୍କ ମନର ବଳ କମିଗଲା । ଯେଉଁ ଭାଇମାନଙ୍କୁ ସେ ରାଜ୍ୟ ଜାଗିର ସ୍ୱରୂପ ଦେଇଥିଲେ, ସେହି-ମାନେ ପୁଣି ତାଙ୍କର ଶତ୍ରୁ ହେଲେ । ସେଥିପାଇଁ ସେ କେତେ ବର୍ଷ ଦାଣ୍ଡର ଭିକାରି ପରି ବଣ, ପାହାଡ, ମରୁଭୂମି ବୁଲି ବୁଲି ପରଦ୍ୱାରରେ ସାହାଯ୍ୟ ମାଗୁଥିଲେ ।

କାମରାନ୍ କାବୁଲ ଓ ପଞ୍ଜାବ ପାଇଲା ପରେ ହୁମାୟୁନଙ୍କୁ ଆଉ ମାନିଲେ ନାହିଁ । ସେହି ଅଞ୍ଚଳର ବହୁତ ଲୋକ ବାବରଙ୍କର ସୈନ୍ୟ

Digitized by srujanika@gmail.com

ଛାଡ଼ିଥିଲେ । ଏବେ କାମରାନ୍‌ଙ୍କ କଥାରେ ପଡ଼ି ସେମାନେ ହୁମାୟୁନ୍‌ଙ୍କୁ ପଚାରିଲେ ନାହିଁ । ହୁମାୟୁନଙ୍କ ସୈନ୍ୟବଳ କମିଗଲା ।

ହୁମାୟୁନ୍ ରାଜା ହେଲା ବେଳକୁ ମୋଗଲମାନଙ୍କ କ୍ଷମତା ଏ ଦେଶରେ ବେଶୀ ଦୃଢ଼ ନ ଥିଲା । ଗୁଜରାଟ ଓ ବଙ୍ଗଳାରେ ପଠାଣ ରାଜାମାନେ ସ୍ୱାଧୀନ ଥିଲେ । ଅନେକ ନୂଆ ଶତ୍ରୁ ବାହାରିଲେ । ହୁମାୟୁନ୍‌ଙ୍କ ଭାଇମାନେ ସେମାନଙ୍କୁ ସାହାଯ୍ୟ ଦେଲେ ।


ହୁମାୟୁନ୍

ଗୁଜରାଟର ରାଜା ବାହାଦୁର ସାହ ଓ ବଙ୍ଗଳାର ଶେର ଖାଁ ବୋଲି ଦୁଇଜଣ ପଠାଣ ବୀର ହୁମାୟୁନ୍‌ଙ୍କର ବଡ଼ ଶତ୍ରୁ ହୋଇ-ଉଠିଲେ । ଏମାନେ ଜୋକ ପରି ତାଙ୍କ ପଛରେ ଏମୁଣ୍ଡ ସେମୁଣ୍ଡ ଲାଗିଗଲେ । ହୁମାୟୁନ୍ ବାହାଦୁରଙ୍କୁ ତଡ଼ି ମାଳବ ନେଇଟି ଦେଶ ଜିଣିଲା ବେଳକୁ ଶେରଖାଁ ବିହାର ବଙ୍ଗଳା ରାଜା-ମାନଙ୍କୁ ଜିତି ନିଜେ ରାଜା ହୋଇପଡ଼ିଲେ । ଗୁଜରାଟ ଛାଡ଼ି ଶେରଖାଁଙ୍କୁ ଦବାଇବାକୁ ଆସିଲା ବେଳକୁ ତେଣେ ବାହାଦୁର ପୁଣି ମାଳବ ଅଧିକାର କରିନେଲେ ।

ଶେରଖାଁ ହୁମାୟୁନ୍‌ଙ୍କର ସର୍ବନାଶ କଲେ । ଦୁଇଟି ଯୁଦ୍ଧରେ ସେ ତାଙ୍କ ସୈନ୍ୟସାମନ୍ତଙ୍କୁ ମାରି ହଟାଇ ଦେଲେ, ହୁମାୟୁନ୍ ଓ ତାଙ୍କ ସ୍ତ୍ରୀଙ୍କୁ ଧରି ନେଇଗଲେ । ଯୁଦ୍ଧବେଳେ ଗଙ୍ଗା ନଈ ବଢ଼ି ଥିଲା । ଶେରଖାଁଙ୍କ ଆକ୍ର-ଆକ୍ରମଣରେ ଅନେକ ଶତ୍ରୁ ନଈରେ ବୁଡ଼ିମଲେ । ହୁମାୟୁନ୍‌ଙ୍କୁ ଜଣେ ପାଣିବୁହା ମଶକରେ ରକ୍ଷା କରିନେଲେ । ତାଙ୍କର ଏହି ଦମ ଥଳି ଉପଦେ

ହାତ ଭରା ଦେଇ ହୁମାୟୁନ ନଈ ପାର ହୋଇ ପ୍ରାଣ ରଖିଲେ । ଆଗ୍ରାକୁ ଫେରିଗଲା ପରେ ହୁମାୟୁନ ସେହି ମହାଜନଙ୍କୁ ପୁରସ୍କାର ଯାଚିଲେ । ମହାଜନ ଓଳଳ ପାଇଁ ରାଜା ହେବ ବୋଲି ଅନୁମତି ମାଗି ସିଂହାସନରେ ବସିଲା । ସେହି ଓଳକ ଭିତରେ ସେ ନିଜ ବଂଶର ଲୋକଙ୍କ ପାଇଁ ଅନେକ ଜମିବାଡ଼ ଖଞ୍ଜିଦେଲା ।

ଏହା ପରେ ୧୫୪୦ ଖ୍ରୀଷ୍ଟାବ୍ଦରେ ଆଉ ଏକ ଯୁଦ୍ଧରେ ଶେରସାହ ହୁମାୟୁନଙ୍କୁ କନୌଜ ପାଖରେ ପରାସ୍ତ କରି ଦିଲ୍ଲୀରେ ରାଜା ହୋଇଥିଲେ ।

## ଶେରସାହ—

ପଠାଣ-ବୀର ଶେରସାହ ଜଣେ ଜମିଦାରଙ୍କ ପୁଅ । ତାଙ୍କର ପ୍ରକୃତ ନାଁ ଫରିଦ । ଥରେ ସେ ଖଣ୍ଡାରେ ଏକା ଚୋଟକେ ଗୋଟାଏ ବାଘକୁ ମାରିଦେବାରୁ ତାଙ୍କ ନାଁ ହେଲା ଶେରସାହ ବା ବାଘ-ରାଜା । ସେ ବାଘ ପରି ବଳୁଆ ଆଉ ସାହସୀ; ମାତ୍ର ବଡ ନିଷ୍ଠୁର ଥିଲେ । ଶତ୍ରୁ ପ୍ରତି ତାଙ୍କର ତିଳେ ହେଲେ ଦୟାମାୟା ନ ଥିଲା । ତାଙ୍କ ବାପା ତାଙ୍କୁ ପିଲାଦିନେ ଭଲ ପାଉ ନ ଥିବାରୁ ସେ ପନ୍ଦର ବର୍ଷ ବୟସବେଳେ ଘର ଛାଡ଼ିଯାଇ ଜଣେ ଭଦ୍ରଲୋକଙ୍କର ଆଶ୍ରୟରେ ରହି ପାଠ ପଢ଼ିଲେ । ମୋଗଲମାନଙ୍କୁ ସେ ଆଦୌ ଭଲ ପାଉ ନ ଥିଲେ । ଏକ ବଡ ଗଡର ବଧବା ମାଲିକଙ୍କୁ ସେ ବିଭା ହୋଇଥିଲେ । ସେବାହା ପରେ ସେ ନିଜର ଦଳେ ସୈନ୍ୟ ଗଢ଼ି ବିହାର ଦେଶକୁ ଅଧିକାର କରି ବସିଲେ । ସେତେବେଳକୁ ବାବର ମରି ସାରିଥିଲେ । ଶେରସାହଙ୍କର ବିହାର ଜୟ ବିଷୟରେ ଗୋଟିଏ କଥା ଅଛି । ଛୋଟନାଗପୁରର ସାହାବାଦ ଜିଲ୍ଲାରେ ରୋଟାସ୍ ବୋଲି ଏକ ଦୁର୍ଗ ଥିଲା । ସେଠାର ହିନ୍ଦୁ ରାଜା ହୁମାୟୁନଙ୍କୁ ଭଲ ପାଉ ନ ଥିଲେ । ଶେରସାହ ତାଙ୍କର ବନ୍ଧୁ ହେଲା ପରି କହି ପଠାଇଲେ ଯେ, ହୁମାୟୁନଙ୍କ ସଙ୍ଗେ ଯୁଦ୍ଧ କରିବାକୁ ସେ ଯାଉଛନ୍ତି । ତାଙ୍କ ପିଲା କୁଟୁମ୍ବଙ୍କୁ ଟିକିଏ ଆଶ୍ରୟ ଦେଲେ ସେ ନିଶ୍ଚିନ୍ତ ହେବେ । ରାଜା ଏଥିରେ ହଁ କହିବାରୁ ଶେରସାହ ହଜାରେ ଡୋଲି ଭିତରେ ପଠାଣ ସୈନ୍ୟଙ୍କୁ ଲୁଚାଇ ରଖି ନିଜ ପିଲା କୁଟୁମ୍ବ ଓ ଦାସଦାସୀଙ୍କୁ ନେଉଥିବା ଛଳନାରେ

Digitized by srujanika@gmail.com

ଗଡରେ ପଶିଗଲେ । ତା ପରେ ହଠାତ୍ ଗଡ ଆକ୍ରମଣ କରି ତାହା ଅଧିକାର କରିନେଲେ । ବିହାର ଜିଣିଲା ପରେ ସେ ବଙ୍ଗଳା ଆଡକୁ ଗଲେ । ଯେଉଁଠାରେ ସେ ହୁମାୟୁନଙ୍କୁ କପଟ ବିପଦରେ ପକାଇଥିଲେ, ଆଗରୁ କୁହାଯାଇଛି ।

ପଠାଣ ରାଜାମାନଙ୍କ ମଧ୍ୟରେ ଶେରଶାହ ଜଣେ ଅତି ଉତ୍ତମ ରାଜା । ତାଙ୍କ ରାଜୁତିରେ ଲୋକେ ସୁଖରେ ଥିଲେ । ହିନ୍ଦୁ ମୁସଲମାନ ସମସ୍ତଙ୍କୁ ସେ ସମାନ ଭାବରେ ପାଳୁଥିଲେ । ଲୋକଙ୍କ ସୁବିଧା ପ୍ରତି ବେଶି ଦୃଷ୍ଟି ଦେଉଥିଲେ । ସିନ୍ଧୁନଦୀଠାରୁ ବଙ୍ଗଳା ପର୍ଯ୍ୟନ୍ତ ହଜାରେ କୋଶ ଲମ୍ବରେ ସେ ଗୋଟିଏ ସଡକ ପକାଇ ତା ପାଖେ ପାଖେ ଗଛ ଲଗାଇଥିଲେ ଓ କୂଅ ଖୋଳାଇଥିଲେ । ଜମି ଜରିପ କରାଇ ଖଜଣା ବସାଇଥିଲେ । ଏହା ଛଡା କେତେ ଯୁଦ୍ଧ କରି ରାଜ୍ୟ ମଧ୍ୟ ଜିଣିଥିଲେ । ଥରେ କାଳିଞ୍ଜର ବୋଲି ଏକ ଦୁର୍ଗ ଜିଣିବାକୁ ଯାଇ ସେହିଠାରେ ତାଙ୍କର ମୃତ୍ୟୁ ହେଲା । ବାରୁଦରେ ନିଆଁ ଲାଗି ତାଙ୍କ ଦେହ ମୁଣ୍ଡ ପୋଡିଗଲା । ସେ ଏତେ କଷ୍ଟ ସହି ପାରୁଥିଲେ ଯେ, ଦେହରୁ ଚମ ସିଝି କରି ଛାଡିଲା ବେଳେ ମଧ୍ୟ ହସି ହସି କଥା କହିପାରୁଥିଲେ ।

ହୁମାୟୁନ ରାଜ୍ୟ ହରାଇ ଯାଇ ପାରସ୍ୟ ରାଜାଙ୍କ ପାଖରେ ଶରଣ ପଶିଥିଲେ । କାବୁଲ ରାଜ୍ୟ ଜିଣିବା ପାଇଁ ପାରସ୍ୟ ରାଜା ତାଙ୍କୁ ଦଶ ହଜାର ସେନା ସାହାଯ୍ୟ ଦେଇଥିଲେ । ସେହି ବଳରେ କେତେ ଯୁଦ୍ଧ କରି ଭାଇ କାମରାନ୍‌ଠାରୁ କାବୁଲ ରାଜ୍ୟ ଜିଣିଲେ ଏବଂ ଭାଇକୁ ଧରି ଆଖି ଫୁଟାଇ ମାରିଦେଲେ । ସେ କାବୁଲରେ ରାଜା ହେବାର ଦଶ ବର୍ଷ ପରେ ଶେର୍‌ଶାହଙ୍କର କାଳ ହେଲା । ଶେରଶାହଙ୍କର ଆଉ କିଏ ଉପଯୁକ୍ତ ବଂଶଧର ନ ଥିଲେ । ଶେଷରେ ହୁମାୟୁନ ପୁଣି ଭାରତକୁ ଆସି ୧୫୫୬ ଖ୍ରୀଷ୍ଟାବ୍ଦରେ ପଠାଣମାନଙ୍କୁ ଜିଣି ଦିଲ୍ଲୀ ଅଧିକାର କଲେ । ଦିଲ୍ଲୀ ଆସିବାର ଛଅମାସ ପରେ ଥରେ ସେ ସନ୍ଧ୍ୟାବେଳେ ଉପାସନା ପାଇଁ କୋଠା ଉପରୁ ଓହ୍ଲାଉଥିବା ବେଳେ ଗୋଡ ଖସିଯିବାରୁ ତଳେ ପଡିଯାଇ ପ୍ରାଣତ୍ୟାଗ କଲେ ।

Digitized by srujanika@gmail.com

**ଆକବର—**

ଶେରସାହ ରାଜ୍ୟ ମାଡି ବସିଥିଲାବେଳେ ହୁମାୟୁନ ବିଦେଶରେ ବୁଲି ରାଜ୍ୟ ଫେରି ପାଇବା ଚେଷ୍ଟାରେ ଥିଲେ । ଦିନେ ଜଣେ ବନ୍ଧୁଙ୍କ ଘରକୁ ସେ ଭୋଜି ଖାଇବାକୁ ଯାଇଥିଲେ । ସେଠାରେ ଗୋଟିଏ ସୁନ୍ଦରୀ ଯୁବତୀ ଦେଖି ତାଙ୍କୁ ବାହା ହେବାକୁ ଇଚ୍ଛା ଜଣାଇଥିଲେ । କିନ୍ତୁ ସେ ଯୁବତୀ ତାଙ୍କୁ ଥଟ୍ଟାକରି କହିଲା—"ତୁମେ ରାଜ୍ୟସମ୍ପତ୍ତି ହରାଇ ଭିକାରୀ ପରି ବୁଲୁଛ, ତୁମେ ମୋର ସ୍ୱାମୀ ହେବା ଉପଯୁକ୍ତ ନୁହଁ ।" ହୁମାୟୁନ ଏଥିରେ ବଡ଼ ଲଜ୍ଜିତ ହୋଇ ଫେରିଗଲେ । ତହିଁ ଆରଦିନ ଯୁବତୀର ମାଆ ହୁମାୟୁନଙ୍କ ଗୁଣ ଜାଣି ଝିଅକୁ ଆଣି ତାଙ୍କ ସହିତ ବାହା କରାଇଦେଲେ । ଏହାର [illegible] ଏକ ବର୍ଷ ପରେ ହୁମାୟୁନ ଶତ୍ରୁଭୟରେ ବଣ ଭିତରେ ଲୁଚି ପଳାଉଥିବା ବେଳେ ତାଙ୍କର ବିଖ୍ୟାତ ପୁତ୍ର ଆକବର ଜନ୍ମ ହୋଇଥିଲେ ।

ହୁମାୟୁନ ଏଣୁ ସ୍ତ୍ରୀ ଓ ଶିଶୁ ଆକବରଙ୍କୁ ଭାଇ କାମରାନଙ୍କ ପାଖରେ ଛାଡ଼ିଦେଇ ଅନ୍ୟ ଆଡ଼େ ବୁଲିଗଲେ । ଆକବର କାମରାନଙ୍କ ଘରେ ରହି ବଡ଼ କଷ୍ଟ ପାଇଲେ । ପିଲାଦିନେ ସେ ବାପାଙ୍କ ଶତ୍ରୁ ପାଖରେ ରହି ନାନା କଷ୍ଟ ସହି ଚଳିଥିବାରୁ ପରେ ବଡ଼ ମନୁଷ୍ୟ ହୋଇପାରିଲେ । ହୁମାୟୁନ ଦିଲ୍ଲୀ ଅଧିକାର କରିବା ଚେଷ୍ଟାରେ ଏଣେ ତେଣେ ବୁଲୁଥିବାରୁ ପୁଅକୁ ପଢାଇ ପାରି ନ ଥିଲେ । ତେଣୁ ଆକବର ଆଦୌ ଲେଖାପଢା ଜାଣି ନ ଥିଲେ ।

ହୁମାୟୁନ ମଲାବେଳକୁ ଆକବରଙ୍କୁ ଚଉଦ ବର୍ଷ । ବାପାଙ୍କର ବିଶ୍ୱସ୍ତ ବନ୍ଧୁ ବୈରାମ ଖାଁ ତାଙ୍କର ମୁରବି ହୋଇ ରହିଲେ । ତାଙ୍କୁ ପିଲା ଦେଖି ହିମୁ ନାମରେ ଜଣେ ହିନ୍ଦୁ ସେନାପତି ମୋଗଲମାନଙ୍କୁ ତଡ଼ି ନିଜେ ରାଜା ହେବାକୁ ଚେଷ୍ଟା କରିଥିଲେ । ଆକବର ପିଲା ହେଲେ କଅଣ ହେଲା, ନିଜେ ଯୁଦ୍ଧଭୂଇଁକୁ ଯାଇ ହିମୁଙ୍କ ସଙ୍ଗେ ଯୁଦ୍ଧ କରିଥିଲେ । ହିମୁ ଯୁଦ୍ଧରେ ହାରିଗଲେ । ହିମୁ ତଳେ ପଡ଼ିଥିବା ଅବସ୍ଥାରେ ତାଙ୍କୁ ହାଣି ଦେବାକୁ ବୈରାମ ଆକବରଙ୍କୁ

Digitized by srujanika@gmail.com

ଆଦେଶ ଦେଲେ ; କିନ୍ତୁ ସେ ତାହା କଲେ ନାହିଁ । କେବଳ ଗୁରୁଙ୍କ କଥା ରଖିବା ପାଇଁ ଶତ୍ରୁ ହିମୁଙ୍କ ମୁଣ୍ଡରେ ଖଣ୍ଡାଟି ଛୁଆଁଇଦେଲେ ।

ବୈରାମ ଖାଁ ପାଞ୍ଚ ବର୍ଷକାଳ ଶାସନ ବୁଝିଲେ । ତାଙ୍କର କଡ଼ା ବ୍ୟବହାର ଲୋକଙ୍କ ଦୃଷ୍ଟିରେ ଭଲ ନାହିଁ । ସେ ସବୁବେଳେ ଆକବରଙ୍କୁ ହାତରେ ରଖିବାକୁ ଇଚ୍ଛା କରୁଥିଲେ । ଶାସନ ଭଲ ନ ଚଳିବାରୁ ଆକବର ତାଙ୍କ ହାତରୁ ଶାସନ କ୍ଷମତା କାଢି ନେଇ ନିଜେ ବୁଝିଲେ । ଏଥିରେ ବୈରାମ ତାଙ୍କ ବିପକ୍ଷରେ ଉଠିଥିଲେ । କିନ୍ତୁ ଆକବର ତାଙ୍କୁ ଦଣ୍ଡ ନ ଦେଇ କ୍ଷମା ଦେଲେ ଓ ମୁସଲମାନଙ୍କ ତୀର୍ଥସ୍ଥାନ ମକ୍କାକୁ ପଠାଇଦେଲେ ।



ଆକବର

ଆକବର ଯେତେବେଳେ ନିଜେ ରାଜ୍ୟ ବୁଝିଲେ, ତାଙ୍କୁ ଚାରିଆଡ଼େ ଅନ୍ଧାର ଦିଶିଲା । ଶତ୍ରୁ ଚାରିଆଡ଼େ ଘେରି ରହିଥାନ୍ତି । ହିନ୍ଦୁ ଓ ମୁସଲମାନମାନଙ୍କ ଭିତରେ ଭାରି ଶତ୍ରୁତା ଥାଏ । ସେ ଦେଖିଲେ ଯେ, ହିନ୍ଦୁମାନଙ୍କୁ ହାତ ନ କଲେ ରାଜ୍ୟ ଚଳାଇ ହେବ ନାହିଁ । ସେତେବେଳେ ରାଜପୁତମାନଙ୍କର ଭାରି କ୍ଷମତା ଥିଲା । ସେମାନଙ୍କ ଭିତରୁ କାହାରିକୁ ସେ ବଡ ବଡ ଚାକିରି ଦେଲେ ଏବଂ କାହା କାହା ସହିତ ବନ୍ଧୁତା ମଧ୍ୟ କଲେ । ଏହିପରି କରି ପ୍ରାୟ ସବୁ ରାଜପୁତ ରାଜାଙ୍କୁ ସେ ନିଜର ଅକ୍ତିଆରରେ ରଖିନେଲେ । କେବଳ ମିବାର ରାଜ୍ୟରେ ଜଣେ ଖାଣ୍ଟି ରାଜପୁତ ରାଜା ଥିଲେ । ସେ ତାଙ୍କ ପାଖରେ ଆଦୌ

Digitized by srujanika@gmail.com

ମୁଣ୍ଡ ନୁଆଇଁଲେ ନାହିଁ । ସେ କେବଳ ନାଁକୁ ତାଙ୍କର ଅଧୀନ ହୋଇଥିଲେ: ଦିଲ୍ଲୀ ଦରବାରରେ ବଡ ସମ୍ମାନ ପାଇଥାନ୍ତେ । ମାତ୍ର ଜାତିର ସ୍ୱାଧୀନତା ହରାଇବାକୁ ସେ ମଙ୍ଗିଲେ ନାହିଁ । ଆକବର ତାଙ୍କ ରାଜଧାନୀ ଚିତୋର ଗଡକୁ ଆକ୍ରମଣ କଲାବେଳକୁ ସେ ପ୍ରଜାଙ୍କୁ କହିଲେ, "ମୋଗଲରାଜ ରାଜ୍ୟକୁ ଯେପରି ଛୁଇଁ ନ ପାଇବ, ସେପରି ଚେଷ୍ଟା କର । ଚାଲ, ସମସ୍ତେ ଯାଇ ବଣରେ ରହିବା ।" ରାଜା ଯେପରି, ତାଙ୍କ ସାଙ୍ଗକୁ ପ୍ରଜା ମଧ୍ୟ ସେପରି ଥିଲେ । ସମସ୍ତେ ଯାଇ ବଣରେ ରହିଲେ । ଆକବରଙ୍କ ସୈନ୍ୟ ଯାଇ ଦେଖିଲାବେଳକୁ ଚିତୋର ଗଡ ମଶାଣି ପରି ପଡିଛି; ପ୍ରଜାଙ୍କ ମଧ୍ୟରୁ ଗୋଟିଏ ବୁଢା ନାହାନ୍ତି । ହଲଦିଘାଟ ବୋଲି ଏକ ଭୟଙ୍କର ପାହାଡ ସନ୍ଧିରେ ମୋଗଲ ଓ ଚିତୋର ରାଜପୁତଙ୍କର ଏକ ଯୁଦ୍ଧ ହେଲା । ଯୁଦ୍ଧରେ ଦେଶ ପାଇଁ ଲଢି ବାଇଶ ହଜାର ରାଜପୁତ ବୀର ମରିଥିଲେ । ଏ ବୀରର ରାଜା ବଣରେ ଫଳମୂଳ ଖାଇ ଗଛମୂଳେ ଶୋଇ କେତେ କଷ୍ଟ ସହିଲେ । ଶେଷରେ ପଚିଶ ବର୍ଷ କାଳ ଯୁଦ୍ଧ କରି ନିଜ ରାଜ୍ୟରୁ ଅନେକ ଫେରି ପାଇଲେ । ଏହି ମହାବୀରଙ୍କ ନାଁ ପ୍ରତାପ ସିଂହ । ରାଜପୁତମାନେ ଏ ପର୍ଯ୍ୟନ୍ତ ପ୍ରତାପଙ୍କୁ ଦେବତା ପରି ସ୍ମରଣ କରୁଛନ୍ତି ।


ରାଣା ପ୍ରତାପ

ହୁମାୟୁନ ମଲାବେଳକୁ ଦିଲ୍ଲୀ ଓ ତାହାର ଆଖପାଖ କେତେ ଖଣ୍ଡ ଅଞ୍ଚଳ ମୋଗଲ ରାଜ୍ୟ ଭିତରେ ଥିଲା । ଆକବର ରାଜପୁତ ଓ ଅନ୍ୟାନ୍ୟ ହିନ୍ଦୁମାନଙ୍କ ସାହାଯ୍ୟରେ ରାଜ୍ୟ ବଢାଇ ସମସ୍ତ ଉତ୍ତର-ଭାରତ ଅଧିକାର କରି-ନେଲେ ।

ପଠାଣ ରାଜୁତି ଆରମ୍ଭରୁ ଏ ପର୍ଯ୍ୟନ୍ତ ଓଡିଶା ସ୍ୱାଧୀନ ଥିଲା । ଆକବର ଏତେ ବଡ ରାଜା ହୋଇ ମଧ୍ୟ ବଙ୍ଗଳାର ପଠାଣ ରାଜା ଦାଉଦଙ୍କୁ ଜବତ

Digitized by srujanika@gmail.com




କରିବା ପାଇଁ ଓଡ଼ିଶାର ଗଜପତି ମୁକୁନ୍ଦଦେବଙ୍କୁ ସାହାଯ୍ୟ ମାଗି ପଠାଇ-ଥିଲେ । ମୁକୁନ୍ଦଦେବଙ୍କ ସାହାଯ୍ୟରେ ବଙ୍ଗଳା ପରାଧୀନ ହେବାରୁ ସେ ଦେଶର ମୁସଲମାନ ରାଜା ସୁଲେମାନ ଗଜପତିଙ୍କ ଉପରେ ଦାଉ ସାଧିବେ ବୋଲି ସୁବିଧା ଖୋଜୁଥିଲେ । ପରେ ଗଜପତି ଓଡ଼ିଶାର ଉତ୍ତର ସୀମା ଗଙ୍ଗା କୂଳରେ

Digitized by srujanika@gmail.com

ରାଜତ୍ୱ କରୁଥିବା ବେଳେ ରାଜା ସୁଲେମାନ ତାଙ୍କ ସେନାପତି କଳାପାହାଡଙ୍କୁ ଓଡ଼ିଶାକୁ ପଠାଇଲେ । ଓଡ଼ିଶାର ଜଣେ ସାମନ୍ତ ରାଜା ରାମଚନ୍ଦ୍ର ଦେବ ଛଦ୍ମ-କଳାପାହାଡଙ୍କୁ ସାହାଯ୍ୟ ଦେଇ ମୁକୁନ୍ଦଦେବଙ୍କୁ ମରାଇ ଦେଲେ । କଳାପାହାଡ ଓଡ଼ିଶାରେ ପଶି, ହଜାର ହଜାର ଦର୍ପ ଦେଉଳ ଭଙ୍ଗା କରି, ଗାଁନଗ୍ରା ପୋଡି ଶେଷରେ ଜଗନ୍ନାଥ ମହାପ୍ରଭୁଙ୍କୁ ନେଇ ଗଙ୍ଗା କୂଳରେ ପୋଡିଦେଇଥିଲା । ଏହି କଳାପାହାଡ ଆଗେ ଜଣେ ହିନ୍ଦୁ ବ୍ରାହ୍ମଣ ଥିଲା । ପରେ ବଙ୍ଗଳା ନବାବଙ୍କ ଝିଅଙ୍କୁ ବାଲ୍ଲ ହୋଇ ମୁସଲମାନ ହୋଇଥିଲା ।

ଏହାପରି ଓଡ଼ିଶା ତାର ସ୍ୱାଧୀନତା ହରାଇ ବଙ୍ଗଳାର ମୁସଲମାନ ରାଜାଙ୍କ ହାତରେ ରହିଲା । ପରେ ଆକବର ସୁଲେମାନଙ୍କଠାରୁ ଓଡ଼ିଶାକୁ ନେଇ ୧୫୯୨ରେ ନିଜ ରାଜ୍ୟ ସଙ୍ଗେ ମିଶାଇଲେ ।

ଆକବର ନିଜ ରାଜ୍ୟକୁ ପନ୍ଦରଟି ସୁବା ବା ପ୍ରଦେଶରେ ବିଭକ୍ତ କରି-ଥିଲେ । ପ୍ରତି ପ୍ରଦେଶରେ ଜଣେ ଲେଖାଏଁ ସୁବାଦାର ଥିଲେ । ସୁବାଦାରଙ୍କ ଅଧୀନରେ ଖଜଣା ଆଦାୟ ପାଇଁ ଜଣେ ଜଣେ ଦେବାନ ରହୁଥିଲେ । କାଜିମାନେ ମୋକଦ୍ଦମା ବୁଝୁଥିଲେ, କତୁଆଲମାନେ ଶାନ୍ତିରକ୍ଷା କରୁଥିଲେ । ରାଜସ୍ୱ ପାଇଁ ଫସଲ ବଦଳରେ ଟଙ୍କା ନିଆଯାଉଥିଲା । ଅମଲାମାନେ ଜାଗିର ନ ପାଇ ଦରମା ପାଉଥିଲେ । ରାଜା ତୋଡରମଲ୍ଲ ସମସ୍ତ ଉତ୍ତର-ଭାରତର ଜମି ମାପ କରି ଖଜଣା ଠିକ କରିଥିଲେ । ଲୋକଙ୍କ ସୁବିଧା ଅନୁସାରେ ଜମି ଆୟର ଏକଚତୁର୍ଥାଂଶ ବା ତାହାର ମୂଲ୍ୟ ରାଜସ୍ୱରୂପେ ନିଆଯାଉଥିଲା ।

ହିନ୍ଦୁ ସମ୍ରାଟ ବିକ୍ରମାଦିତ୍ୟଙ୍କ ପାଖରେ କାଳିଦାସ ପ୍ରଭୃତି ନଅ ଜଣ ବଡ ପଣ୍ଡିତ ଥିଲା ପରି ଆକବରଙ୍କ ରାଜସଭାରେ ଅନେକ ବଡ ବଡ ଲୋକ ଥିଲେ । ଆକବର ନିଜେ ଲେଖିପଢି ନ ଜାଣି ମଧ୍ୟ ଗୁଣୀର ଗୁଣକୁ ବେଶ୍ ବୁଝି-ପାରୁଥିଲେ । ଇତିହାସ-ଲେଖକ ଆବୁଲଫାଜଲ ତାଙ୍କର ଅତି ପ୍ରିୟ ଥିଲେ । ଫୈଜୀ ତାଙ୍କର ସଭାକବି, ତାନସେନ ସଙ୍ଗୀତ-ଗାୟକ, ତୋଡରମଲ୍ଲ ସଦର ଦେବାନ, ରାଜପୁତ ରାଜା ମାନସିଂହ ସେନାପତି ଓ ସୁବାଦାର ଏବ

Digitized by srujanika@gmail.com

ବ୍ରାହ୍ମଣ ଆକବରର ବିଦୂଷକ ଥିଲେ । ତାନସେନ ଯେଉଁ ଦିନ ରାଜସଭାରେ ଗୋଟିଏ ଗୀତ ଗାଉଥିଲେ, ଆକବର ଅତି ଆନନ୍ଦରେ ତାଙ୍କୁ ଦୁଇ ଲକ୍ଷ ଟଙ୍କା ପୁରସ୍କାର ଦେଉଥିଲେ । ରାଜା ତୋଡରମଲ୍ଲ ଜାତିରେ କ୍ଷତ୍ରିୟ; ଘର ଲାହୋରରେ । ପିଲାଦିନେ ବାପାଙ୍କୁ ହରାଇ ସେ ବଡ଼ କଷ୍ଟ ସହିଥିଲେ । କିନ୍ତୁ ନିଜ ବୁଦ୍ଧି ଓ ଚେଷ୍ଟା ବଳରେ ଆକବରଙ୍କ ମନ୍ତ୍ରୀପଦକୁ ଉଠିପାରିଥିଲେ । ସେ ମୋଗଲ ରାଜାଙ୍କ ପାଖରେ ରହି ମଧ୍ୟ ନିଜ ଧର୍ମ ଛାଡ଼ି ନ ଥିଲେ । ଥରେ ସେ ଦିଲ୍ଲୀଠାରୁ ବହୁ ଦୂର ସ୍ଥାନକୁ ଯାଇଥିଲେ । ସଙ୍ଗରେ ଆକବର ମଧ୍ୟ ଥିଲେ । ପ୍ରତିଦିନ ଶାଳଗ୍ରାମ ପୂଜା ନ କରି ସେ କିଛି ଖାଆନ୍ତି ନାହିଁ । ବାଟରେ ଶାଳଗ୍ରାମଟି ହଜିଗଲା । ଆକବର ଖାଇବାକୁ ଯେତେ ବୁଝାଇଲେ ସୁଦ୍ଧା ସେ ଖାଇଲେ ନାହିଁ । ଆଉ ଗୋଟିଏ ଶାଳଗ୍ରାମ ନ ପାଇବା ପର୍ଯ୍ୟନ୍ତ ବହୁଦିନ କାଳ ସେ ଉପବାସ ରହିଥିଲେ ।

ଆକବର ସାହସ, ବଳ ଓ କ୍ଷମାଗୁଣରେ ଖୁବ୍ ବଡ଼ ଥିଲେ । ସେ ବାଘ ସଙ୍ଗେ ଲଢ଼େଇ କରିପାରୁଥିଲେ । ଖାଲି ଗୋଡରେ କୋଡିଏ କୋଶ ବାଟ ଚାଲିଯାଇ ପାରୁଥିଲେ । ସେ ନିଜ ଶତ୍ରୁକୁ ମଧ୍ୟ କ୍ଷମା ଦେଉଥିଲେ । ନିଜର ବନ୍ଧୁବାନ୍ଧବଙ୍କୁ ପ୍ରାଣଠାରୁ ବଳି ସ୍ନେହ କରୁଥିଲେ । ହିନ୍ଦୁ ଓ ମୁସଲମାନଙ୍କୁ ଏକ ଦେଖୁଥିଲେ । ସେ କାହାରି ଧର୍ମରେ ବାଧା ଦେଉ ନ ଥିଲେ । ପ୍ରଜାଙ୍କ ସୁଖଦୁଃଖ ନିଜେ ବୁଝୁଥିଲେ ।

ଆକବରଙ୍କ ଶେଷଜୀବନ ବଡ଼ ଦୁଃଖରେ କଟିଥିଲା । ପୁଅ ସେଲିମ ତାଙ୍କ ବିରୁଦ୍ଧରେ ଉଠି ଆବୁଲଫାଜିଲଙ୍କୁ ମାରିଦେଲେ । ତାଙ୍କର ଅନ୍ୟ ଦୁଇ ପୁଅ ମଦ ଖାଇ ମରିଥିଲେ । ପୁତ୍ର ମରଣ ତାଙ୍କୁ ବଡ଼ ବାଧିଥିଲା । ସେ ବହୁତ ଅଫିମ ଖାଉଥିଲେ ।

ରାଜା ମାନସିଂହ ଆକବରଙ୍କ ସେନାପତି ହୋଇ ଅନେକ ରାଜ୍ୟର ଲୁଟ ମୁଣ୍ଡାଇଥିଲେ । କ୍ରମେ ତାଙ୍କର ଏତେ କ୍ଷମତା ବଢ଼ିଲା ଯେ, କାଳେ ସେ ଦିଲ୍ଲୀ-ଗାଦୀ ମାଡ଼ିବସିବେ ବୋଲି ଆକବରଙ୍କର ସନ୍ଦେହ ହେଲା । ଏଥି ଉତ୍ତାରେ ଦିନେ ସେ ତାଙ୍କୁ ମାରିବାକୁ ଇଚ୍ଛା କରି ପିଇବା ଜିନିଷ ସଙ୍ଗେ ବିଷ ମିଶାଇ ରଖିଥିଲେ । ମାନ ଦୁହେଁ ଖାଇ ବସିଥିଲା ବେଳେ ଆକବର ଭୁଲରେ ସେହି ବିଷ ପିଇଦେଇ ମରିଗଲେ ।

Digitized by srujanika@gmail.com

**ଜାହାଙ୍ଗୀର—**

ସେଲିମ ଜାହାଙ୍ଗୀର ନାମ ବହି ୧୬୦୫ ଖ୍ରୀଷ୍ଟାବ୍ଦରେ ଦିଲ୍ଲୀ ଗାଦୀରେ ବସିଲେ । ଆକବର ସେଲିମଙ୍କ ସ୍ୱଭାବ ଦେଖି ତାଙ୍କୁ ରାଜା ନ କରି ତାଙ୍କ ପୁଅ ଖସ୍ରୁଙ୍କୁ ରାଜା କରିବେ ବୋଲି ଭାବିଥିଲେ । ମାତ୍ର ଜାହାଙ୍ଗୀର ରାଜା ହେବାରୁ ଖସ୍ରୁ ପଞ୍ଜାବରେ ଥାଇ ବାପାଙ୍କ ବିରୁଦ୍ଧରେ ଉଠିଲେ । ଜାହାଙ୍ଗୀର ତାଙ୍କୁ ଧରାଇ ଆଣି ତାଙ୍କ ଆଖି ଦୁଇଟି ଫୁଟାଇ ଦେଇ ବନ୍ଦିଶାଳରେ ରଖିଲେ । ଖସ୍ରୁ ବନ୍ଦିଶାଳରେ ପଡି ୧୬୨୨ ଖ୍ରୀଷ୍ଟାବ୍ଦରେ ମରିଗଲେ । କେହି କେହି କହନ୍ତି ଯେ, ଖସ୍ରୁଙ୍କ ଭାଇ ସାଜାହାନ ତାଙ୍କୁ ମାରିପକାଇଥିଲେ । ଖସ୍ରୁ ବନ୍ଦୀ ହେବା ପୂର୍ବରୁ ଜୀବନ ଘେନି କାବୁଲ ଚାଲିଯାଉଥିବା ବେଳେ ଶିଖଗୁରୁ ଅର୍ଜୁନ ତାଙ୍କ ପ୍ରତି ଦୟା ବହି ତାଙ୍କୁ ପାଞ୍ଚ ହଜାର ଟଙ୍କା ସାହାଯ୍ୟ ଦେଇଥିଲେ । ଜାହାଙ୍ଗୀର ପରେ ଏହା ଜାଣି ଶିଖଗୁରୁଙ୍କୁ ଧରାଇ ଆଣି ମାରିପକାଇଲେ ।

ସମ୍ରାଟ ହେବା ପୂର୍ବରୁ ଜାହାଙ୍ଗୀର ମିହିରୁନ୍ନିଶା ନାମରେ ପାରସ୍ୟ ଦେଶର ଏକ ସୁନ୍ଦରୀ କନ୍ୟାକୁ ଦେଖି ବାହା ହେବା ପାଇଁ ମନ ବଳାଇ-ଥିଲେ । ଆକବର କିନ୍ତୁ ମିହିରୁନ୍ନିଶାଙ୍କୁ ଶେର ଆଫଗାନ୍ ବୋଲି ଜଣେ ପାରସ୍ୟ ଯୁବାଙ୍କୁ ବାହା କରାଇଦେଲେ । ଶେର ଆଫଗାନ ସେତେବେଳେ ବର୍ଦ୍ଧମାନର ଶାସନକର୍ତ୍ତା ଥିଲେ । ଜାହାଙ୍ଗୀର ସିଂହାସନରେ ବସିବା ମାତ୍ରେ କୌଶଳରେ ଶେର ଆଫଗାନଙ୍କୁ ମରାଇ ମିହିରୁନ୍ନିଶାଙ୍କୁ ନେଇ ଆସିଲେ । କିନ୍ତୁ ସେ ନିଜର ସ୍ୱାମୀଙ୍କ ହତ୍ୟାକାରୀଙ୍କୁ ବାହା କରିବାକୁ ରାଜି ହେଲେ ନାହିଁ । ସେ ଏହିପରି ଛଅ ବର୍ଷ କାଳ ମାନ କରି ବସିଲେ; କିନ୍ତୁ ଶେଷରେ ଜାହାଙ୍ଗୀରଙ୍କୁ ବାହା ହେଲେ ।

ସେହି ଦିନୁ ତାଙ୍କ ନାଁ ନୂରଜାହାନ ହେଲା । ସେ ଭାରି ସୁନ୍ଦରୀ ଓ ବୁଦ୍ଧିମତୀ ଥିଲେ । ତାଙ୍କ ସ୍ୱାମୀ ଜାହାଙ୍ଗୀର ଦିନରାତି ମଦ ଖାଇ ରାଜ୍ୟ କଥା କିଛି ନ ବୁଝି ନିଶାରେ ଭୋଳ ରହିବାରୁ ସେ ନିଜ ବାପାଙ୍କୁ ପ୍ରଧାନ ମନ୍ତ୍ରୀ କରି ନିଜେ ନିଜେ ଶାସନକାର୍ଯ୍ୟ ବୁଝିଲେ । ଏହିପରି ଭାବରେ ତାଙ୍କୁ ଷୋଳ ବର୍ଷ କାଳ ରାଜ୍ୟ ବୁଝିବାକୁ ପଡିଲା । ତାଙ୍କ ଅମଳରେ ଇଂଲଣ୍ଡର ରାଜା ଜେମସ୍ ଭାରତକୁ ଜଣେ ରାଜଦୂତ ପଠାଇଥିଲେ ।

Digitized by srujanika@gmail.com

୧୬୨୭ ଖ୍ରୀଷ୍ଟାବ୍ଦରେ ଜାହାଙ୍ଗୀରଙ୍କର ମୃତ୍ୟୁ ହେଲା । ନୁରଜାହାନ ନିଜର ଜ୍ୱାଇଁଙ୍କୁ ରଜା କରିବାକୁ ଚେଷ୍ଟା କରୁଥିଲେ; କିନ୍ତୁ ଦୂରରୁ ସାଜାହାନ ଶୀଘ୍ର ଫେରିଆସି ରଜଗାଦୀ ମାଡିବସିଲେ ଏବଂ ନୂରଜାହାନଙ୍କ ହାତରୁ ରାଜ୍ୟଭାର ଛଡାଇନେଲେ । ଏହା ପରେ ନୂରଜାହାନ ପେନ୍‌ସନ୍ ପାଇ ଆହୁରି କୋଡିଏ ବର୍ଷକାଳ ବଞ୍ଚିରହିଲେ ।

## ସାଜାହାନ—

ସାଜାହାନ ଗାଦୀରେ ବସିବା ମାତ୍ରେ ତାଙ୍କ ବିରୁଦ୍ଧରେ ଆଉ କାହାରି କଏ ଉଠିବ ବୋଲି ସନ୍ଦେହ କରି ନିଜର ଭାଇ ଓ ପୁରୁଷମାନଙ୍କୁ ମାରି ପକାଇଲେ । ତାଙ୍କ ଶାସନ-ନୀତି ଭଲ ଥିଲା । ସେ ଅନେକ ସୁନ୍ଦର ସୁନ୍ଦର ମସ୍‌ଜିଦ୍, ମହଲ ଓ କବର ତୋଲାଇଛନ୍ତି । ମମତାଜମହଲ ନାମରେ ତାଙ୍କର ଗୋଟିଏ ଅତି ସୁନ୍ଦରୀ ସ୍ତ୍ରୀ ଥିଲେ । ସେ ରାଣୀ ନୁର୍‌ଜାହାନଙ୍କ ଭାଇ ମହା-ମତ୍‌ଖାଁଙ୍କ ଝିଅ । ମମତାଜ୍‌ମହଲ୍ ମରିଯିବା ପୂର୍ବରୁ ସ୍ୱାମୀଙ୍କୁ ନିୟମ କରାଇଥିଲେ, "ଜୀବ-ନରେ ଆଉ ବିବାହ କରିବ ନାହିଁ । ମୋର ଶବ ନେଇ ଗୋଟିଏ କବର ତିଆରି କରିବ ।"



ସାଜାହାନ

ସାଜାହାନ ତାଙ୍କୁ ଏତେ ଭଲ ପାଉଥିଲେ ଯେ, ତାଙ୍କ ଅନ୍ତେ ଆଉ ଜୀବନରେ ବିବାହ କଲେ ନାହିଁ । ଆଗ୍ରା ନିକଟରେ ଯମୁନା କୂଳରେ ରାଣୀଙ୍କର ଗୋଟିଏ କବର ତିଆରି କରାଇଲେ । ଏହି କବରଟି ଶଂଖମଲମଲ ପଥରରେ ତିଆରି । ଏହାକୁ ତିଆରି କରିବାକୁ ୩୦ ବର୍ଷ କାଳ ଲାଗିଥିଲା । ଏଥିରେ ୩୦ ଲକ୍ଷ ଟଙ୍କା ଖର୍ଚ୍ଚ ହୋଇଥିଲା । ପୃଥିବୀରେ ଏହା ଗୋଟିଏ ଆଶ୍ଚର୍ଯ୍ୟ ଜିନିଷ ।

ଆହୁରି ମଧ୍ୟ ସେ ଜୁମା ମସଜିଦ୍ ଓ ମୋତି ମସଜିଦ୍ ନାମକ ଦୁଇଟି ମସ୍‌ଜିଦ୍ ତୋଲାଇଥିଲେ ଏବଂ ଛଅ କୋଟି ଟଙ୍କା ଖରଚ କରି ମୟୂର ସିଂହା-ସନ ତିଆରି କରାଇଥିଲେ ।

Digitized by srujanika@gmail.com

ସାଜାହାନଙ୍କର ଚାରି ପୁଅ--ଦାରା, ସୁଜା, ଆଉରଙ୍ଗଜେବ୍ ଓ ମୁରାଦ । ଦାରା ଭାରି ସୁନ୍ଦର, ସାହସୀ ଓ ଦାନୀ । ତାଙ୍କର ହୃଦୟ ବଡ ଖୋଲା; କିନ୍ତୁ ସେ ବଡ ରାଗୀ ଓ ଗର୍ବୀ ଥିଲେ । ହିନ୍ଦୁମାନଙ୍କ ପ୍ରତି ତାଙ୍କର ଭାରି ଦୟା ଥିଲା । ଦ୍ୱିତୀୟ ପୁତ୍ର ସୁଜା ସାହସୀ ଓ ଚତୁର । ସେ କିନ୍ତୁ ଜାହାଙ୍ଗୀରଙ୍କ ପରି ବିଳାସ ଓ ମଦ୍ୟପ୍ରିୟ ଥିଲେ । ଆଉରଙ୍ଗଜେବ୍ ଭାରି କୌଶଳୀ, ସାହସୀ ଓ ଯୋଦ୍ଧା । ସେ ପିଲାବେଳେ ବଡ ହେବାକୁ ଇଚ୍ଛା କରୁଥିଲେ । ସାନ ଭାଇ ମୁରାଦ୍ ମଦ ପିଇ ନିଶାରେ ଭୋଳ ହୋଇ ଶିକାର କରିବାରେ ଭାରି ଆନନ୍ଦ ଅନୁଭବ କରୁଥିଲେ ।

ଆଉରଙ୍ଗଜେବଙ୍କ ଉପରେ ସାଜାହାନଙ୍କର ବଡ ବିଶ୍ୱାସ ଥିଲା । ୧୬୫୭ ମସିହାରେ ସାଜାହାନ୍ ବେମାର ପଡିଲେ । ରାଜଗାଦୀ ପାଇଁ ଚାରି ଭାଇଙ୍କ ଭିତରେ କଳି ଲାଗିଲା । କାଳେ ସାଜାହାନ୍ ଦାରାଙ୍କୁ ସିଂହାସନ ଦେଇଦେବେ, ଏହି ଆଶଙ୍କାରେ ଆଉରଙ୍ଗଜେବ୍ ବାପାଙ୍କୁ ନଜରବନ୍ଦୀରେ ରଖିଲେ ଓ କୌଶଳରେ ଅନ୍ୟ ତିନି ଭାଇଙ୍କୁ ମାରି ନିଶ୍ଚିନ୍ତ ହୋଇ ସିଂହାସନରେ ବସିଲେ । ସାଜାହାନ୍ ନଅବର୍ଷ କାଳ ଏହିପରି ନଜରବନ୍ଦୀରେ ରହି ଶେଷରେ ପ୍ରାଣତ୍ୟାଗ କଲେ ।

## ଆଉରଙ୍ଗଜେବ—

ଆଉରଙ୍ଗଜେବ ଭାଇମାନଙ୍କୁ ମାରି ବାପାଙ୍କୁ ବନ୍ଦୀ କରି ରଖିଲେ । କିନ୍ତୁ ଏତିକରେ ତାଙ୍କ ସନ୍ଦେହ ତୁଟିଲା ନାହିଁ । ଭାଇମାନଙ୍କୁ ମାରିବାରେ ମିର୍‌ଜୁମଲା ନାମରେ ଜଣେ ସେନାପତି ତାଙ୍କୁ ସାହାଯ୍ୟ କରିଥିଲେ । କାଳେ ସେ ବିଦ୍ରୋହୀ ହୋଇ ରାଜଗାଦୀ ଛଡାଇନେବେ, ଏହି ସନ୍ଦେହ ତାଙ୍କୁ ଦିନରାତି ଘାରିଲା । ସେ ତାଙ୍କଠାରୁ ରକ୍ଷା ପାଇବା ଲାଗି ବାଟ ଖୋଜୁଥାନ୍ତି । ଥରେ ଆସାମ ଜିଣିବାକୁ ସୈନ୍ୟ ସହ ତାଙ୍କୁ ପଠାଗଲା । ବାଟରେ ସେ ମରିଗଲେ ।

Digitized by srujanika@gmail.com

ଆଉରଙ୍ଗଜେବ ଏ ଖବର ପାଇ ଦୁଃଖିତ ହେବା ଦୂରେ ଥାଉ, ମନେ ମନେ ଢେର ଖୁସି ହେଲେ । ଆଉରଙ୍ଗଜେବ ଜୀବନରେ କାହାରିକୁ ବିଶ୍ୱାସ କରୁ ନ ଥିଲେ । ଏପରିକି ନିଜର ପୁଅ ସ୍ତ୍ରୀଙ୍କୁ ମଧ୍ୟ ଅବିଶ୍ୱାସ କରୁଥିଲେ । ସେ ବଡ଼ କଟ୍ଟର । ଯେଉଁ ହିନ୍ଦୁମାନଙ୍କୁ ଆକବର ଏତେ ଭଲ ପାଉଥିଲେ ଓ ଯାହାଙ୍କ ସାହାଯ୍ୟରେ ଏତେ ବଡ଼ ରାଜ୍ୟ ଗଢି ପାରିଥିଲେ, ସେହି ହିନ୍ଦୁମାନଙ୍କ ଉପରେ ଅତ୍ୟାଚାର କରିବାକୁ ଆଉରଙ୍ଗଜେବ ଆରମ୍ଭ କଲେ ।

ଆଉରଙ୍ଗଜେବ

ଯେଉଁ ହିନ୍ଦୁମାନେ ମୁସଲମାନ ନ ହେଲେ, ସେମାନଙ୍କ ଉପରେ ଜିଜିୟା କର ବସିଲା । କେତେ ଯେ ହିନ୍ଦୁମନ୍ଦିର ଭଙ୍ଗା ହେଲା, ତାହା ଗଣି କହି ହେବ ନାହିଁ । ସେହି ସ୍ଥାନଗୁଡ଼ିକରେ ମସଜିଦ୍ ସବୁ ତୋଳା ହେଲା । କେତେ ପଥରର ଠାକୁର, ଠାକୁରାଣୀଙ୍କୁ ଆଣି ଅପମାନ ଦେବା ଉଦ୍ଦେଶ୍ୟରେ ଘୃଣିତ ପାହାଚ କରାଇଲେ । ହିନ୍ଦୁମାନଙ୍କୁ ବଡ ବଡ ଚାକିରି ମିଳିଲା ନାହିଁ । ସେମାନେ ଏହି ସବୁ ଅତ୍ୟାଚାରରୁ ତ୍ରାହି ପାଇବା ଲାଗି ମୋଗଲ ସାମ୍ରାଜ୍ୟକୁ ଧ୍ୱଂସ କରିବାକୁ ଇଚ୍ଛା କଲେ । ରାଜପୁତମାନେ ତାଙ୍କର ପ୍ରଧାନ ଶତ୍ରୁ ହୋଇଉଠିଲେ । ମହାରାଷ୍ଟ୍ରୀମାନେ ମଧ୍ୟ ତାଙ୍କ ବିରୁଦ୍ଧରେ ଠିଆହେଲେ ।

ଆଉରଙ୍ଗଜେବଙ୍କର ଅନେକ ଭଲ ଗୁଣ ମଧ୍ୟ ଥିଲା । ସେ ଭୋଗ ବିଳାସକୁ ଆଦୌ ଭଲ ପାଉ ନ ଥିଲେ । ମଦ ମାଂସର ପାଖ ମାଡୁ ନ ଥିଲେ । ତାଙ୍କ ଧର୍ମରେ ସେ ଧାର୍ମିକ ଥାଇ ଫକୀର ପରି ଦିନ କାଟୁଥିଲେ । ନିଜ ପାଇଁ ରାଜଭଣ୍ଡାରରୁ ଏକ ପଇସା ସୁଦ୍ଧା ଖରଚ କରୁ ନ ଥିଲେ ।

ନିଜର ଖୋରାକ ପୋଷାକ ପାଇଁ କୋରାନ୍ ନକଲ କରି ଓ ଟୋପି ତିଆରି କରି ସେଥିରୁ ମିଳୁଥିବା ପଇସା ଖରଚରେ ଲଗାଉଥିଲେ । ସେ

Digitized by srujanika@gmail.com

ମଲାବେଳେ କହିଥିଲେ, "ମୋର ଶୁଦ୍ଧ ବ୍ୟୟରେ ରାଜଭଣ୍ଡାରରୁ ଏକ ପଇସା ଖରଚ କରିବ ନାହିଁ । ମୋ ବହିଲେଖା ପଇସା ଜମା ଅଛି, ସେଥିରୁ ଖରଚ କରିବ ।"

ଆଉରଙ୍ଗଜେବ ଧନେ ହେଲେ ଜୀବନରେ ଶାନ୍ତି ପାଇ ନାହାନ୍ତି । ମୁରାଦ ଜୀବିତ ଥିଲାବେଳେ ଦାକ୍ଷିଣାତ୍ୟରେ ଯୁଦ୍ଧ କରୁଥିଲେ । ରାଜା ହେଲା ପରେ ମଧ୍ୟ ବିଜାପୁର, ଗୋଲକୁଣ୍ଡା ଜିଣି ନିଜ ରାଜ୍ୟରେ ମିଶାଇବା ଲାଗି ମରିବା ପର୍ଯ୍ୟନ୍ତ ତାଙ୍କୁ ଯୁଦ୍ଧ କରିବାକୁ ପଡ଼ିଥିଲା । ଜୀବନଯାକ ଯୁଦ୍ଧ କରି କରି ରାଜଭଣ୍ଡାର ଶୂନ୍ୟ ହୋଇଗଲା । ଅନେକ ସୈନ୍ୟସାମନ୍ତ ମଲେ । ତଥାପି ଏତେ ସୈନ୍ୟ ଥିଲେ ଯେ, ସେମାନଙ୍କୁ ଦରମା ଦେବାକୁ ଟଙ୍କା ନିଅଣ୍ଟ ପଡ଼ିଲା । ବିଜାପୁର, ଗୋଲକୁଣ୍ଡା ରାଜଧାନୀଠାରୁ ବହୁତ ଦୂର ହୋଇଥିବାରୁ ସେମାନଙ୍କୁ ସହଜରେ ଜବତ୍ କରିହେଲା ନାହିଁ । ଏ ସୁଯୋଗ ପାଇ ମରହଟ୍ଟାମାନଙ୍କର ବଳ ବଢ଼ିଗଲା । ଘରିଆଡେ ଆଉରଙ୍ଗଜେବଙ୍କର ଶତ୍ରୁ ବଢ଼ିଲେ । ସେ ଶେଷରେ ନିଜର ଭୁଲ ବୁଝିପାରି ବହୁତ ଅନୁତାପ କଲେ । ୧୭୦୭ ରେ ୯୦ ବର୍ଷ ବୟସରେ ହତାଶ ହୋଇ ସେ ମରିଗଲେ । ତାଙ୍କ ପରେ ବିଶାଳ ମୋଗଲ ସାମ୍ରାଜ୍ୟ ଖଣ୍ଡ ଖଣ୍ଡ ହୋଇଗଲା ।

---

## ନାଦିରସାହା

ନାଦିର ଜଣେ ସାମାନ୍ୟ ଲୋକର ପୁଅ । ନିଜ ବାହୁବଳରେ ନାନା ଦେଶ ଜିଣି ଶେଷରେ ସେ ପାରସ୍ୟ ଦେଶର ରାଜା ହେଲେ । ସେତେବେଳକୁ ସେଠାରେ ମୋଗଲମାନଙ୍କର ବଳପରାକ୍ରମ କମିଯାଇଥିଲା । ସେ ସେମାନଙ୍କ-ଠାରୁ କାବୁଲ ରାଜ୍ୟ ଛଡ଼ାଇ ନେଲେ ଓ ଶେଷରେ ୧୭୩୮ ରେ ଭାରତ ଆକ୍ରମଣ କରିବାକୁ ଆସିଲେ । ପ୍ରଥମେ କର୍ଣ୍ଣାଟଠାରେ ଯୁଦ୍ଧ ହେଲା । ମୋଗଲ ସମ୍ରାଟ୍ ମହମ୍ମଦ ସାହା ପରାସ୍ତ ହେଲେ । ତା ପରେ ନାଦିର ସହଜରେ ଦିଲ୍ଲୀ ଅଧିକାର କରି ବସିଲେ । ଯେଉଁ ଦିନ ସେ ଦିଲ୍ଲୀ ଅଧିକାର କଲେ, ତା

Digitized by srujanika@gmail.com



ପରଦିନ ଶୁଣାଗଲା ଯେ, ସେ ମରି ଯାଇଛନ୍ତି । ଏ କଥା ଶୁଣି ଲୋକେ ସହରରେ ତାଙ୍କ ସୈନ୍ୟମାନଙ୍କୁ ଦିଲ୍ଲୀ ସହରରୁ ତଡ଼ି ଦେଇ ପାରିବେ ଆଶା କରି ତାଙ୍କ ସୈନ୍ୟରୁ କେତେ ଜଣଙ୍କୁ ମାରିପକାଇଲେ । ନାଦିର ଏଥିରେ ଚାଳ ଉଠିଲେ ଏବଂ ସମସ୍ତ ଦିଲ୍ଲୀବାସୀଙ୍କୁ ହତ୍ୟା କରି-ବାକୁ ଆଦେଶ ଦେଲେ । ପାରସ୍ୟ ସୈନ୍ୟ କି ପିଲା, କି ବୁଢ଼ା, ସ୍ତ୍ରୀ, ପୁରୁଷ ଯେଉଁଠି ଯାହାକୁ ଦେଖିଲେ ତାଙ୍କୁ ମାରି ଶୁଆଇଦେଲେ ।

ନାଦିରଶାହା

ଦିଲ୍ଲୀରେ ରକ୍ତନଦୀ ବୋହିଗଲା । ରାଜଭଣ୍ଡାର ଲୁଟି ହେଲା । ଦିଲ୍ଲୀ ସହରର ଧନସମ୍ପତ୍ତି ଲୁଟି କରାଗଲା । ଶେଷରେ ସମ୍ରାଟ୍ ମହମ୍ମଦ ଶାହା ତାଙ୍କ ପାଖରେ ଶରଣ ପଶି କ୍ଷମା ମାଗିଲେ । ନାଦିର ଅଠାବନ ଦିନ ଦିଲ୍ଲୀରେ ରହି ଅନେକ ଧନରତ୍ନ ଧରି ନିଜ ଦେଶକୁ ଫେରିଗଲେ । ଗଲାବେଳେ ସଙ୍ଗେ ସଙ୍ଗେ ମୟୂର ସିଂହାସନ ଓ କୋହିନୁର ନାମକ ପ୍ରସିଦ୍ଧ ହୀରା ନେଇଗଲେ ଏବଂ ସନ୍ଧି କରିଗଲେ ଯେ, ସିନ୍ଧୁ ନଦୀର ପଶ୍ଚିମ ପଟ ଦେଶ ପାରସ୍ୟ ରାଜା ପାଇବେ ।

---

# ମରହଟ୍ଟା ଓ ଶିବାଜି

ଦାକ୍ଷିଣାତ୍ୟର ଉତ୍ତର ପଶ୍ଚିମ କୋଣରେ ଥିବା ପାହାଡ଼ିଆ ଅଞ୍ଚଳର ନାମ ମହାରାଷ୍ଟ୍ର । ସେହି ସ୍ଥାନର ଲୋକେ ଭାରି ଟାଣୁଆ ଓ ସାହସୀ । ସେମାନଙ୍କ ମନର ବଳ ଖୁବ୍ ବେଶୀ । ସେଠା ଅଧିବାସୀଙ୍କୁ ମରହଟ୍ଟା କହନ୍ତି । ଦାକ୍ଷିଣାତ୍ୟର କେତେକ ଅଞ୍ଚଳ ମୁସଲମାନମାନେ ଛଡ଼ାଇ ନେଇଥିଲେ ସୁଦ୍ଧା ହିନ୍ଦୁମାନେ ଅନେକ ସ୍ଥାନରେ ରହି ଖଜଣାପତ୍ର

Digitized by srujanika@gmail.com



ଶିବାଜୀ

ଆଦାୟ କରୁଥିଲେ । କେବେ କେବେ ସୈନ୍ୟ ହୋଇ ଯୁଦ୍ଧ ମଧ୍ୟ କରୁଥିଲେ । ସେତେବେଳେ ଏ ସବୁ କାର୍ଯ୍ୟ ଲାଗି ରାଜାମାନେ ସେମାନଙ୍କୁ ଜାଗିର ଦେଉଥିଲେ ।

ସାହାଜି ଭୋନସଲ ବୋଲି ଦାକ୍ଷିଣାତ୍ୟର ଅହମଦାବାଦ ରାଜ୍ୟରେ ଏପରି ଜଣେ ଜାଗିରଦାର ଥିଲେ । କିଛି ଦିନ ପରେ ସେ ସେଠାରୁ ବାହାରି ଆସି ବିଜାପୁରର ପଠାଣ ରାଜାଙ୍କ ପାଖରେ ଚାକିରି କଲେ । ସେଠାରେ ସେ ଅନେକ ଜାଗିର ପାଇଥିଲେ । ଶିବାଜୀ ଏହି ସାହାଜିଙ୍କ ପୁଅ । ୧୬୨୭ ଖ୍ରୀଷ୍ଟାବ୍ଦରେ ତାଙ୍କର ଜନ୍ମ । ସାହାଜି ସବୁବେଳେ ଘରେ ରହୁ ନ ଥିବାରୁ ଶିବାଜୀଙ୍କୁ ପୁନାଠାରେ ଦାଦାଜି କୁଣ୍ଡ ନାମରେ ଜଣେ ବ୍ରାହ୍ମଣଙ୍କ ପାଖରେ ଛାଡ଼ିଦେଇଥିଲେ । ଦାଦାଜି କୁଣ୍ଡ ଶିବାଜୀଙ୍କୁ ଘୋଡ଼ାଚଢ଼ା, ଖଣ୍ଡାର ଏବଂ ଯୁଦ୍ଧବିଦ୍ୟା ଶିଖାଇଲେ । ଶିବାଜୀ ଅନେକ ସମୟରେ ନିଜ ଜାଗିରକୁ ବୁଲିଯାଉଥିଲେ । ସେଠାରେ କଣୁଆ ମରହଟ୍ଟାଙ୍କ ସଙ୍ଗେ ବଣ ଜଙ୍ଗଲରେ ଶିକାର କରିବାକୁ ତାଙ୍କୁ ଖୁବ୍ ଭଲ ଲାଗୁଥିଲା । ସବୁବେଳେ ତାଙ୍କ ମନ ଏଥିରେ ଲାଗି ରହିଲା । ପାଠପଢ଼ାରେ ମନ ଆଦୌ ଲାଗିଲା ନାହିଁ । ଏପରି କି ସେ ନିଜ ନାଁ ସୁଦ୍ଧା ଲେଖି ଜାଣି ନ ଥିଲେ । ପୁନାର ଆଖପାଖ ଗାଁର କଣୁଆ ମରହଟ୍ଟାମାନେ ସମୟ ସମୟରେ ମୁସଲମାନ ଦୁର୍ଗ ସବୁ ଲୁଟି କରୁଥିଲେ । ଶିବାଜୀ ସେମାନଙ୍କୁ ଯୁଦ୍ଧବିଦ୍ୟା ଶିଖାଇ ସେମାନଙ୍କର ଦଳପତି ହେଲେ । ସେତେବେଳକୁ ତାଙ୍କୁ କୋଡ଼ିଏ ବର୍ଷ ବୟସ ହୋଇଥିଲା । ସେ ଅଳ୍ପଦିନରେ ବିଜାପୁର ରାଜାଙ୍କର କେତେକ ଦୁର୍ଗ ଅଧିକାର କରିନେଲେ । ଏହିପରି ତାଙ୍କର ଧନ ଓ ସୈନ୍ୟସଂଖ୍ୟା ଦିନକୁ ଦିନ ବଢ଼ିଲା, ତାଙ୍କ ଯଶ ଚାରିଆଡ଼େ ଶୁଣାଗଲା ।

Digitized by srujanika@gmail.com

ବିଜାପୁର ରାଜାଙ୍କ କାନରେ ଏ କଥା ପଡ଼ିଲା । ସେ ଶିବାଜିଙ୍କ ବାପା ଦାଦାଜିଙ୍କୁ ଏଥିପାଇଁ ଦାୟୀ କଲେ ଓ ବନ୍ଦୀ କରି ରଖିଲେ । ସାଜାହାନ ସେତେବେଳେ ମୋଗଲ ସମ୍ରାଟ୍ । ତାଙ୍କଠାରୁ ସାହାଯ୍ୟ ନେଇ ଶିବାଜି ବାପାଙ୍କୁ ମୁକ୍ତ କଲେ । ତେଣୁ ବିଜାପୁର ରାଜା ଶିବାଜିଙ୍କୁ ଜବତ୍ କରିବାକୁ ସେନାପତି ଆଫଜଲ୍ ଖାଁଙ୍କୁ କେତେକ ସୈନ୍ୟ ଦେଇ ପଠାଇଲେ । ଆଫଜଲ୍ ଖାଁ ଦଳବଳ ନେଇ ଶିବାଜିଙ୍କ ଦୁର୍ଗ ପାଖରେ ପହଞ୍ଚିଥିଲେ । ଶିବାଜି କୌଶଳ କରି ତାଙ୍କ ସହିତ ସନ୍ଧି କରିବାକୁ କହି ତାଙ୍କୁ ଡକାଇଲେ । ଆଫଜଲ୍ ମନେମନେ ଖୁସି ହୋଇ ଏକାକୀ ତାଙ୍କୁ ଭେଟିବାକୁ ଗଲେ । ଆଗରୁ କଥା ହୋଇଥିଲା, କେବଳ ସେ ଦୁହେଁ କଥାବାର୍ତ୍ତା ହେବେ, ଆଉ କେହି ସେଠି ରହିବେ ନାହିଁ । ଆଫଜଲ ସାଥିରେ ଖଣ୍ଡେ ତରବାରି ନେଇଥାନ୍ତି । ସେ ମନେ କରିଥିଲେ, ଶିବାଜିଙ୍କୁ ଏକାକୀ ଦେଖି ଖଣ୍ଡାରେ ହାଣି ପକାଇବେ । ମାତ୍ର ଶିବାଜିଙ୍କ ବୁଦ୍ଧିକି ତାଙ୍କ ବୁଦ୍ଧିକଟୁଁ ବଳପଡ଼ିଲା । ଶିବାଜି ଆଗରୁ ପିନ୍ଧିବା ଲୁଗାରେ କଙ୍କଡ଼ା ବିଛା ନାମରେ ଗୋଟିଏ ଅସ୍ତ୍ର ଲୁଚାଇ ନେଇଥିଲେ ଓ ହାତରେ ଇସ୍ପାତ୍ ଲୁହା ତିଆରି ବାଘନଖ ଲୁଚାଇ ରଖିଥିଲେ । ସେ ଅସ୍ତ୍ର-ଯୋଡ଼ିକ ଏପରି ପିନ୍ଧିଥିଲେ ଯେ, ହାତ ମୁଠା କଲା ବେଳେ କେବଳ ମୁଦି-ଯୋଡ଼ିଏ ବାହାରକୁ ଦିଶୁଥିଲା ।

ଉଭୟଙ୍କର ଭେଟ ହୋଇଲା । ଶିବାଜି ତାଙ୍କୁ ବନ୍ଧୁଭାବରେ ଆଲିଙ୍ଗନ କରିବାକୁ ଗଲାବେଳେ ଆଫଜଲ୍ ଉପରୁ ଶିବାଜିଙ୍କୁ ଖଣ୍ଡାରେ ଭୁଷିଦେବେ ବୋଲି ଖଣ୍ଡା ଉଠାଇଲେ । ଶିବାଜି ସାଙ୍ଗେ ସାଙ୍ଗେ ଆଫଜଲ୍‌ଙ୍କ ବୁକୁରେ ବାଘ-ନଖ ଭୁଷିଦେଲେ । ମୁହୂର୍ତ୍ତକରେ ସେ ଶେଷ । ଆଫଜଲଙ୍କ ସୈନ୍ୟ ଭୟରେ ପଳାଇଗଲେ ।

ଏଥିରେ ଶିବାଜିଙ୍କ ସାହସ ବଢ଼ିଗଲା । କ୍ରମେ ସେ ମୋଗଲ ଦୁର୍ଗକୁ ଆକ୍ରମଣ କରିବାକୁ ବସିଲେ । ସେତେବେଳକୁ ଆଉରଙ୍ଗଜେବ୍ ଦିଲ୍ଲୀର ସମ୍ରାଟ୍ । ସେ କି ଏ କଥା ସହନ୍ତେ ? ସେ ତାଙ୍କ ମାମୁ ସାୟସ୍ତ ଖାଁଙ୍କୁ ବହୁତ ସୈନ୍ୟ ଦେଇ ଶିବାଜିଙ୍କୁ ଜବତ୍ କରିବାକୁ ପଠାଇଲେ । ସାୟସ୍ତ ଖାଁ ଦଳବଳ ନେଇ ପୁନା ଆକ୍ରମଣ କରିବାକୁ ଗଲେ । ସେ ଠାଏ ତମ୍ବୁ ପକାଇ ରହିଥାନ୍ତି । ଶିବାଜି ଦିନେ ରାତିରେ ଗୁପ୍ତ ବେଶରେ ଜୋଡ଼ିଏ ଜଣ ମାତ୍ର

Digitized by srujanika@gmail.com

ସୈନ୍ୟ ନେଇ ଗୋପନରେ ସାୟସ୍ତ ଖାଁଙ୍କ ଶୋଇବା ଘରେ ପଶିଲେ ଏବଂ ତାଙ୍କୁ ମାରିଦେବାକୁ ଯାଉଥିବା ବେଳେ ସେ ହଠାତ୍ ଉଠିପଡ଼ି ଝରକା ବାଟେ ଡେଇଁ ପଳାଇଗଲେ । ପଳାଇବା ବେଳେ ଶିବାଜୀଙ୍କ ଖଣ୍ଡାଘାତରେ ତାଙ୍କର ହାତର ଆଙ୍ଗୁଠି ଛିଣ୍ଡିଗଲା । ସେ ପ୍ରାଣ ଘେନି ପଳାଇଲେ । ମାତ୍ର ଶିବାଜୀଙ୍କୁ ଏତେ ଡରିଗଲେ ଯେ, ଦାକ୍ଷିଣାତ୍ୟ ଆଉ ସେ ମାଡ଼ିଲେ ନାହିଁ ।

ଏଣିକି ଶିବାଜୀଙ୍କୁ ସୁଯୋଗ ମିଳିଲା । ସେ ଦୁର୍ଗ ପରେ ଦୁର୍ଗ ଅଧିକାର କଲେ ଓ ନିଜେ ରାଜା ହୋଇ ନିଜ ନାମରେ ମୁଦ୍ରା ଚଳାଇଲେ । ଏଥିରେ ଆଉରଙ୍ଗଜେବ୍ ଭୟଙ୍କର ଭାବରେ ରାଗି ରାଜପୁତ ବୀର ଜୟସିଂହଙ୍କୁ ତାଙ୍କ ବିରୁଦ୍ଧରେ ଯୁଦ୍ଧ କରିବାକୁ ପଠାଇଲେ । ଏଥର ଶିବାଜୀ ହାରିଗଲେ ଏବଂ ତାଙ୍କ ସଙ୍ଗେ ସନ୍ଧି କଲେ । ଶିବାଜୀ ମୋଗଲଙ୍କ ସାହାଯ୍ୟରେ ବିଜାପୁରର ପଠାଣ ରାଜାଙ୍କ ସହିତ ଯୁଦ୍ଧ କରି ତାଙ୍କୁ ହଟାଇଦେଲେ । ଆଉରଙ୍ଗଜେବ୍ ଏଥିରେ ଖୁସି ହୋଇ ତାଙ୍କୁ ଆଗ୍ରା ରାଜଧାନୀକୁ ନିମନ୍ତ୍ରଣ କଲେ । ଶିବାଜୀ ମୋଗଲ ସମ୍ରାଟଙ୍କୁ ଭେଟି ଦେବା ପାଇଁ ସାଥୀରେ ଅନେକ ଧନରତ୍ନ ନେଇଥିଲେ । ଆଗରୁ ସେ ଆଉରଙ୍ଗଜେବଙ୍କର ବଶତା ସ୍ୱୀକାର କରୁ ନ ଥିଲେ । ଅପମାନ ଦେବା ଉଦ୍ଦେଶ୍ୟରେ ରାଜଦରବାରକୁ ତାଙ୍କୁ ଗୋଟିଏ ଝରକା ବାଟେ ଅଣାଗଲା । ଆଉରଙ୍ଗଜେବ ମନେ କରିଥିଲେ,ଶିବାଜୀ ଝରକାବାଟେ ଆସିଲାବେଳେ ପ୍ରଥମେ ମୁଣ୍ଡ ନୁଆଁଇ ଆସିବେ । ଏହାଦ୍ୱାରା ତାଙ୍କୁ ଅପମାନ ହେବ; କିନ୍ତୁ ଶିବାଜୀ ବଡ଼ ବୁଦ୍ଧିମାନ ! ଝରକାବାଟେ ଦରବାରକୁ ପଶିବା ବେଳେ ଆଗ ସେ ଗୋଡ଼ ବଢ଼ାଇଦେଲେ । ଆଉରଙ୍ଗଜେବ ତାଙ୍କୁ ଆଦର ଅଭ୍ୟର୍ଥନା ଦେଖାଇବା ଦୂରେ ଥାଉ, ପଛରେ ଠିଆ ହୋଇ ରହିବାକୁ ଆଦେଶ ଦେଲେ ।

ଏଥିରେ ଶିବାଜୀ ରାଗିଉଠିଲେ । ତାଙ୍କ ଆଖି ଲାଲ ଲାଲ ହୋଇଗଲା । ସେ ମୋଗଲ ସମ୍ରାଟଙ୍କୁ ଟାଣ ଟାଣ କରି କଥା କହିଲେ । ତାଙ୍କ ସାହସ ଦେଖି ସଭାର ଲୋକମାନେ ଆଶ୍ଚର୍ଯ୍ୟ ହୋଇଗଲେ । ଅନ୍ୟ-ମାନେ ଏହା ଦେଖି ଭାବିଲେ, ଏଥର ନିଶ୍ଚୟ ଶିବାଜୀଙ୍କ ମୁଣ୍ଡକାଟ ହେବ । କେହି କେହି କହନ୍ତି, ଆଉରଙ୍ଗଜେବଙ୍କର ଜେବୁନ୍ନିଷା ନାମରେ ଗୋଟିଏ ଝିଅ ଥିଲା । ସେ ପରଦା ପଛରେ ରହି ସବୁ ଦେଖୁଥିଲା ।

Digitized by srujanika@gmail.com

ସେତେବେଳେ ସେ ଶିବାଜିଙ୍କ ବୀରତ୍ୱ, ସାହସ ଦେଖି ଆଶ୍ଚର୍ଯ୍ୟ ହୋଇଗଲା ଓ ତାଙ୍କ ପ୍ରତି ଅନିଷ୍ଟ ନ କରିବାକୁ ପିତାଙ୍କୁ ଅନୁରୋଧ କରିଥିଲା । ତେଣୁ ଆଉରଙ୍ଗଜେବ୍ ସେତେବେଳେ ତାଙ୍କର ଅନିଷ୍ଟ କଲେ ନାହିଁ । କିନ୍ତୁ ଶିବାଜି ଓ ତାଙ୍କ ପୁଅ ଶମ୍ଭୁଜି ଆଗ୍ରାରେ ନଜରବନ୍ଦୀରେ ରହିଲେ ।

କିପରି ସେ ନଜରବନ୍ଦୀରୁ ଖସି ଆସିବେ, ଏଥିଲାଗି ନାନା ଉପାୟ ଭାବି ଶେଷରେ ଦେହ ଖରାପ ଅଛି ବୋଲି ଛଳନା କଲେ । ଆଉରଙ୍ଗଜେବ ମନେ କଲେ, ଶତ୍ରୁ ମରିଗଲେ ଆଉ ଦାଉ ସାଧି ପାରିବେ ନାହିଁ । ତେଣୁ ତାଙ୍କୁ ଭଲ କରିବାପାଇଁ କେତେ ବୈଦ୍ୟ ପଠାଇଲେ । ଶିବାଜିଙ୍କର ଜଣେ ବନ୍ଧୁ ଫକୀର ବେଶରେ ଯାଇ ତାଙ୍କୁ ଭଲ କରିଦେବେ ବୋଲି ଜଣାଇଲେ । ସେଠାରେ ସେ ଶିବାଜିଙ୍କୁ ଗୁପ୍ତ ମନ୍ତ୍ରଣା ଦେଲେ । ଶିବାଜି ସମ୍ରାଟଙ୍କୁ କହି ପଠାଇଲେ ଯେ, ଦୁଃଖୀ ରଙ୍କୀଙ୍କୁ ମିଠେଇ ବାଣ୍ଟିଲେ ତାଙ୍କ ରୋଗ ଭଲ ହୋଇ-ଯିବ । ପ୍ରତିଦିନ ଅନେକ ମିଠେଇ ବଣ୍ଟାଗଲା । ମାତ୍ର ଆଉରଙ୍ଗଜେବ ଜଗୁଆଳୀମାନଙ୍କୁ ପ୍ରତିଦିନ ମିଠେଇ ଟୋକେଇ ପରୀକ୍ଷା କରିବା ପାଇଁ କଡ଼ା ତାଗିଦ କରିଥିଲେ । ଏହିପରି କେତେ ଦିନ ଚାଲିଲା । କିଛି ଦିନ ପରେ ଜଗୁ-ଆଳୀମାନେ ଆଉ ଦେଖିଲେ ନାହିଁ । ଦିନେ ଶିବାଜି ଓ ଶମ୍ଭୁଜି ଟୋକେଇ ଭିତରେ ଲୁଚି ବାହାରକୁ ବାହାରି ଆସିଲେ । ଶିବାଜି ରାତି ରାତି ଚାଲିବାକୁ ଲାଗିଲେ । ବାଟରେ ଶମ୍ଭୁଜିଙ୍କୁ ଜଣେ ବିଶ୍ୱସ୍ତ ପୁରୋହିତଙ୍କ ଘରେ ଛାଡ଼ି ଆସିଲେ । ବାଟରେ କେହି ଚିହ୍ନିବ ବୋଲି ସେ ପ୍ରତିଦିନ ଭିନ୍ନ ଭିନ୍ନ ବେଶ ଧରୁଥାନ୍ତି । ଶେଷରେ ନିରାପଦରେ ନିଜ ଘରେ ପହଞ୍ଚିଲେ । ପରେ ସେହି ପୁରୋହିତଙ୍କଠାରୁ ଶମ୍ଭୁଜିଙ୍କୁ ଫେରିପାଇ ତାଙ୍କୁ ତିନି ଲକ୍ଷ ଟଙ୍କା ପୁରସ୍କାର ଦେଲେ ।

ଏଥର ଶିବାଜି ଫେରି ଆସି ନିକଟବର୍ତ୍ତୀ ମୋଗଲ ରାଜ୍ୟରୁ ଚଉଥ ବା ଖଜଣାର ଚାରିପଣ ଆଦାୟ କଲେ ଓ ମୋଗଲ ଦୁର୍ଗ ସବୁ ଆକ୍ରମଣ କଲେ । ଆଉରଙ୍ଗଜେବ୍ ତାଙ୍କୁ ଆଉ ପାରିଲେ ନାହିଁ । ସେ ୧୬୭୪ ରେ ରାୟଗଡ଼-ଠାରେ ମହାରାଜା ଉପାଧି ଧାରଣ କରି ରାଜଗାଦିରେ ବସିଲେ । କିନ୍ତୁ ତାଙ୍କୁ ବାଳ ସହିଲା ନାହିଁ । ସେ ୧୬୮୦ରେ ୫୩ ବର୍ଷ ବୟସରେ ମରିଗଲେ ।

Digitized by srujanika@gmail.com

ଶିବାଜି ଅନ୍ୟ ଧର୍ମକୁ କେବେହେଁ ଘୃଣା କରୁ ନ ଥିଲେ । କୌଣସି ମୋଗଲ ସ୍ତ୍ରୀ ବିପଦରେ ପଡ଼ିବାର ଦେଖିଲେ ସେ ତାକୁ ଆଶ୍ରୟ ଦେଇ ତାର ନିଜ ଘରେ ନେଇ ତାକୁ ଛାଡ଼ିଦେଇ ଆସୁଥିଲେ । ସେ ଗୋଜାତି ଓ ହିନ୍ଦୁମାନଙ୍କୁ ଶତ୍ରୁ ହସ୍ତରୁ ରକ୍ଷା କରିବାକୁ ପ୍ରାଣପଣେ ଚେଷ୍ଟା କରୁଥିଲେ ।

---

# ପେଶବା ବଂଶ

ଆଉରଙ୍ଗଜେବ ଶିବାଜିଙ୍କ ଉପରେ ଥିବା ରାଗ ତାଙ୍କ ପୁଅନାତିଙ୍କ ଉପରେ ସୁଝାଇଲେ । ଶିବାଜିଙ୍କ ପୁଅ ଶମ୍ଭୁଜି ବିଳାସୀ ହୋଇପଡ଼ିଲେ । ଆଉରଙ୍ଗଜେବ୍ ତାଙ୍କୁ ଧରିନେଇ ବନ୍ଦୀ କଲେ ଓ ଆଖି ଫୁଟାଇ ମାରି ପକାଇଲେ । ତାଙ୍କ ପୁଅ ସାହୁଙ୍କୁ ମଧ୍ୟ ନେଇ ରଖିଲେ, କିନ୍ତୁ ସାହୁଙ୍କୁ ସେ ଭାରି ଭଲ ପାଉଥିଲେ । ଆଉରଙ୍ଗଜେବଙ୍କ ମୃତ୍ୟୁ ପରେ ସାହୁ ମୁକ୍ତି ପାଇଲେ । ସେ ଅନେକ ଦିନ ମୋଗଲ ଦରବାରରେ ରହି ଅଧା ମୋଗଲ ହୋଇଯାଇଥିଲେ । ସେ ନିଜେ କିଛି କାମ ନ କରି ସୁଖସମ୍ଭୋଗରେ ରହିବାକୁ ଚାହିଁଲେ । ତେଣୁ ସେ ନିଜେ ରାଜକାର୍ଯ୍ୟ ବୁଝି ନ ପାରି ଜଣେ ବ୍ରାହ୍ମଣଙ୍କୁ ପେଶବା ବା ମନ୍ତ୍ରୀ କରି ତାଙ୍କ ହାତରେ ସବୁ ଛାଡ଼ିଦେଲେ । ଏହି ପ୍ରଥମ ମନ୍ତ୍ରୀଙ୍କ ନାଁ ବାଲାଜି ବିଶ୍ୱନାଥ । ବାଲାଜି ବିଶ୍ୱନାଥ ଓ ତାଙ୍କ ପୁଅନାତିମାନେ ମରହଟ୍ଟା ରାଜ୍ୟରେ ସର୍ବେସର୍ବା ହେଲେ । ବାଲାଜି ବିଶ୍ୱନାଥ ଏବଂ ତାଙ୍କର ବଂଶଧରମାନଙ୍କୁ ପେଶବା କହନ୍ତି ।

ପେଶବା ରାଜତ୍ୱରେ ମରହଟ୍ଟାମାନଙ୍କ କ୍ଷମତା ଖୁବ୍ ବଢ଼ିଯାଇଥିଲା । ସେମାନେ ଦାକ୍ଷିଣାତ୍ୟରୁ ଚଉଥ ଆଦାୟ କରିବା ପାଇଁ ଦିଲ୍ଲୀ ସମ୍ରାଟଙ୍କଠାରୁ ଅନୁମତି ପାଇଥିଲେ । ଦିଲ୍ଲୀ ମଧ୍ୟ ସେମାନଙ୍କ ଭୟରେ ଥରିଲା । ସେମାନଙ୍କ କ୍ଷମତା ଏତେ ବଢ଼ିଲା ଯେ, ସେମାନେ ଭାରତର ସମ୍ରାଟ୍ ହେବେ ବୋଲି ବୋଧହେଲା ।

---

Digitized by srujanika@gmail.com

# ବର୍ଗି

ଲୋକେ ମରହଟ୍ଟା ଅଶ୍ୱାରୋହୀମାନଙ୍କୁ ବର୍ଗି କହୁଥିଲେ । ମରହଟ୍ଟା-ମାନେ ପ୍ରଥମେ ବଙ୍ଗଳା ଦେଶ ଲୁଟ୍‌ପାଟ୍ କଲେ । ସେମାନେ ରାତି ଅଧରେ ଆସି ଲୋକଙ୍କୁ ଆକ୍ରମଣ କରୁଥିଲେ । ଲୋକେ ବର୍ଗି ଆସୁଛନ୍ତି ବୋଲି ଶୁଣିଲେ ଗାଁଗଣ୍ଡା ଛାଡି ପଳାଉଥିଲେ । ସେମାନେ ଘରେ ନିଆଁ ଲଗାଇ ଦେଉଥିଲେ, ଫସଲ କିଆରୀରୁ ନଷ୍ଟ କରିଦେଉଥିଲେ । ବଙ୍ଗଳା ଓ ଓଡିଶାରେ ତାଙ୍କ ଅତ୍ୟାଚାର ଏତେ ବେଶୀ ହେଲା ଯେ, ଲୋକେ ଥରହର ହେଲେ । ସେମାନେ ଯେଉଁ ଆଡେ ଗଲେ, ସେଆଡେ ଦୁର୍ଭିକ୍ଷ ପଡିଲା । ଏହି ବର୍ଗିଙ୍କଠାରୁ ରକ୍ଷା ପାଇବା ଲାଗି ବଙ୍ଗଳାରେ ବଡ ବଡ ଖାଇ ଖୋଳାଯାଇଥିଲା । ଏ ଖାଇକୁ ମରହଟ୍ଟା ଖାଇ କହନ୍ତି । ଅଲିବର୍ଦ୍ଦି ଖାଁ ବଙ୍ଗଳା, ବିହାର ଓ ଓଡିଶାର ସୁବାଦାର ଥିବା ଅମଳରେ ଏମାନଙ୍କ ଅତ୍ୟାଚାର ଆରମ୍ଭ । ରଘୁଜି ଭୋନସଲ ତାଙ୍କର ସେନାପତି ଭାସ୍କର ପଣ୍ଡିତଙ୍କୁ ବଙ୍ଗଳା ଆକ୍ରମଣ କରିବାକୁ ଅନେକ ଥର ପଠାଇଥିଲେ । ଆଲିବର୍ଦ୍ଦି ଖାଁ ମରହଟ୍ଟାଙ୍କ ସଙ୍ଗେ ଅନେକ ଥର ଯୁଦ୍ଧ କରିଥିଲେ । ମରହଟ୍ଟାମାନେ ଅନେକ ଯୁଦ୍ଧରେ ଜିଣି ବୀରଭୂମି, ବର୍ଦ୍ଧମାନ, ମେଦିନାପୁର ପ୍ରଭୃତି ରାଜ୍ୟ ନେଇଗଲେ ।

ମରହଟ୍ଟାଙ୍କ ଭୟରେ ଅନେକ ଲୋକ ନିଜ ରାଜ୍ୟ ଛାଡି କଲିକତା ପଳାଇଗଲେ । ଯେତେବେଳେ ଇଂରେଜମାନେ କଲିକତାରେ ଥାନ୍ତି । ମରହଟ୍ଟାମାନେ କଲିକତା ଆକ୍ରମଣ କରିବାକୁ ସାହସ କରୁ ନ ଥିଲେ । ଆଲିବର୍ଦ୍ଦି ଖାଁ ଭାସ୍କର ପଣ୍ଡିତଙ୍କୁ ଯୁଦ୍ଧରେ ପାରିଲେ ନାହିଁ । ତାଙ୍କୁ ଟଙ୍କା ଲୋଭ ଦେଖାଇ ନିଜ ଛାଉଣିକି ସନ୍ଧି କରିବାକୁ ଡାକି ଆଣିଲେ ଓ ସେଠାରେ ମାରି ପକାଇଲେ; କିନ୍ତୁ ମରହଟ୍ଟାମାନେ ନିଶ୍ଚିନ୍ତ ହୋଇ ରହିଲେ ନାହିଁ । ସେ ଆଲିବର୍ଦ୍ଦି ଖାଁଙ୍କୁ ନାକେଦମ୍ କଲେ । ସେ ବାଧ୍ୟ ହୋଇ ରଘୁଜିଙ୍କୁ ଓଡିଶା ଛାଡିଦେଲେ ଏବଂ ତାଙ୍କୁ ବାର୍ଷିକ ୧୨ ଲକ୍ଷ ଟଙ୍କା ଦେବାକୁ ଚୁକ୍ତି କଲେ ।

ବର୍ଗିଙ୍କ ଅତ୍ୟାଚାରରେ ଲୋକେ ଭୟ କରି ଘର ଦୁଆର ତୋଳୁ ନ ଥିଲେ ଓ ଧନ ସଞ୍ଚୟ କରୁ ନ ଥିଲେ ।

---

# ଉତ୍କଳର ସ୍ୱାଧୀନତା ଲୋପ

ପ୍ରତାପରୁଦ୍ରଙ୍କର ଦୁଇ ପୁଅ ଥିଲେ । ସେମାନେ ଅଯୋଗ୍ୟ ଥିବାରୁ ପ୍ରତାପଙ୍କ ପରେ ତାଙ୍କର ମନ୍ତ୍ରୀ ଗୋବିନ୍ଦ ବିଦ୍ୟାଧର ରାଜା ହେଲେ । ତାଙ୍କ ସମୟରେ ସିଂହାସନ ନେଇ ଭୟଙ୍କର ଗୋଳମାଳ ହେଲା । ଦେଶରେ ହାଣ କାଟ ଚାଲିଲା । ପ୍ରତାପରୁଦ୍ରଦେବ ଦାକ୍ଷିଣାତ୍ୟରେ ଯୁଦ୍ଧ କରୁଥିବା ବେଳେ ମୁକୁନ୍ଦ ହରିଚନ୍ଦନ ବୋଲି ଜଣେ ଲୋକ ତାଙ୍କ ସଙ୍ଗରେ ପାଇକ ହୋଇ ଆସିଥିଲେ । ସେ ନିଜର ବିଦ୍ୟାବୁଦ୍ଧି ବଳରେ ପାଇକ ଚାକିରିରୁ ଉଠି ଓଡ଼ିଶାର ସେନାପତି ହେଲେ । ଦେଶରେ ଘୋର ଅଶାନ୍ତି ହେବାରୁ ସେ ଗୋବିନ୍ଦ ବିଦ୍ୟାଧରଙ୍କ ପରେ ସିଂହାସନରେ ବସିଲେ । ସେ ତେଲୁଗୁ ଦେଶରୁ ଆସିଥିବାରୁ ତାଙ୍କୁ ତେଲଙ୍ଗା ମୁକୁନ୍ଦ ଦେବ କହନ୍ତି । କଟକ ତାଙ୍କର ରାଜଧାନୀ ହେଲା । ସେ ବାରବାଟୀ କିଲ୍ଲାରେ ଗୋଟିଏ ନୂଆ ନଅ ମହଲା କୋଠା ତିଆରି କଲେ । ମୁକୁନ୍ଦଦେବ ଭଲ ଶାସନ କଲେ । ସେ ଏତେ ବୀର ଥିଲେ ଯେ, ତାଙ୍କ ପ୍ରତାପରେ ମୁସଲମାନମାନେ ଥରହର ହେଉ-ଥିଲେ । ସେତେବେଳେ ଆକବର ଭାରତର ମୋଗଲ ସମ୍ରାଟ୍ । ଆକବରଙ୍କର ଏତେ ସୈନ୍ୟବଳ ଥିଲା ଯେ, ରାଜପୁତମାନଙ୍କ ପରି ବୀର ତାଙ୍କ ପାଖରେ ମୁଣ୍ଡ ନୁଆଇଁଥିଲେ । ଉତ୍କଳ ଛଡ଼ା ଉତ୍ତର-ଭାରତର ସମସ୍ତ ରାଜ୍ୟ ତାଙ୍କ ଅଧୀନରେ ରହିଲା । ସେତେବେଳେ ସୁଲେମାନ୍ ବଙ୍ଗଳାର ନବାବ ଥାନ୍ତି । ସୁଲେମାନ୍ ମଧ୍ୟ କମ୍ ଯୋଦ୍ଧା ନୁହନ୍ତି । ମୋଗଲ ସମ୍ରାଟ୍ ଆକବର ସୁଲେ-ମାନଙ୍କୁ ଜୟ କରିବାକୁ ଇଚ୍ଛା କଲେ । ସେ ମୁକୁନ୍ଦଦେବଙ୍କ ବୀରତ୍ୱ କଥା ଶୁଣିଥିଲେ । ସେ ଏହି କାର୍ଯ୍ୟ ଲାଗି ମୁକୁନ୍ଦଦେବଙ୍କୁ ସାହାଯ୍ୟ ମାଗିଲେ । ସେ ତାଙ୍କୁ ସାହାଯ୍ୟ ଦେଲେ । ମୁକୁନ୍ଦ ଦେବ ସାହାଯ୍ୟ ଦେଉଥିବା କଥା ସୁଲେମାନ ଶୁଣି ଭୟରେ ଆକବରଙ୍କଠାରେ ଶରଣ ପଶିଲେ । ସୁଲେମାନ ଆକବରଙ୍କ ଅଧୀନରେ ରହି ବଙ୍ଗ ଶାସନ କଲେ ।

ମୁକୁନ୍ଦଦେବ ଆକବରଙ୍କୁ ସାହାଯ୍ୟ ଦେବାରୁ ସୁଲେମାନ୍ ତାଙ୍କ ଉପରେ ରାଗ ରଖିଥାନ୍ତି । ସେହି ରାଗରେ ସେ ଓଡ଼ିଶା ଆକ୍ରମଣ କଲେ । ସୁଲେମାନ୍ ହାରି ପଳାଇଲେ । ମୁକୁନ୍ଦ ତାଙ୍କ ପଛେ ପଛେ ବଙ୍ଗଳା ପର୍ଯ୍ୟନ୍ତ ଗୋଡ଼ାଇଲେ । କଟକ ପାଖରେ ଶାରଙ୍ଗଗଡ଼ ବୋଲି ଗୋଟିଏ ଛୋଟିଆ ରାଜ୍ୟ

Digitized by srujanika@gmail.com

ଥିଲା । ସେଠାର ସାମନ୍ତ ରାଜା ରାମଚନ୍ଦ୍ର ଭଞ୍ଜ ମୁକୁନ୍ଦଦେବଙ୍କ ଅଧୀନରେ ଥିଲେ । ସେ ମୁକୁନ୍ଦଦେବଙ୍କ ବିରୁଦ୍ଧରେ ବିଦ୍ରୋହ କଲେ । ମୁକୁନ୍ଦଦେବ ଗଙ୍ଗା କୂଳରେ ତପସ୍ୟା କରୁଥିବା ବେଳେ ରାମଚନ୍ଦ୍ର ସୁଲେମାନ୍‌ଙ୍କ ସେନାପତି କଳା-ପାହାଡ଼ଙ୍କୁ ଡାକି ଆଣି ଓଡ଼ିଶା ଆକ୍ରମଣ କଲେ । ମୁକୁନ୍ଦଦେବ ଏ ଖବର ପାଇ ଶୀଘ୍ର କଳାପାହାଡ଼ ସାଙ୍ଗେ ଯୁଦ୍ଧ କଲେ । ଯାଜପୁରଠାରେ ଭୀଷଣ ଯୁଦ୍ଧ ହେଲା । ଯୁଦ୍ଧରେ ମୁକୁନ୍ଦଦେବ ମରିଗଲେ [୧୫୬୮] । ଏହି ଦିନ ଓଡ଼ିଶାର ସ୍ୱାଧୀନତା ଲୋପ ପାଇଲା । ତା ପରେ ଆକବରଙ୍କ ସେନାପତି ମାନସିଂହ ୧୫୭୨ ଖ୍ରୀଷ୍ଟା-ବ୍ଦରେ ଓଡ଼ିଶା ଜିଣିଲେ ।

---

# ଓଡ଼ିଶାରେ ମୋଗଲ ଓ ମରହଟ୍ଟା ରାଜତ୍ୱ

ଓଡ଼ିଶା ମୋଗଲ ସମ୍ରାଟ୍ ଆକବରଙ୍କ ସମୟରେ ମୋଗଲ ସାମ୍ରାଜ୍ୟରେ ମିଶିବା କଥା ତୁମ୍ଭେମାନେ ଆଗରୁ ଶୁଣିଛ । ଓଡ଼ିଶା ୧୫୭୭ ଖ୍ରୀଷ୍ଟାବ୍ଦଠାରୁ ୧୭୫୧ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ମୋଗଲ ବାଦଶାହଙ୍କ ଅଧୀନରେ ରହିଲା । ସେମାନଙ୍କର ଶାସନକର୍ତ୍ତାମାନେ ଓଡ଼ିଶାକୁ ଶାସନ କରୁଥିଲେ । ଆଉରଙ୍ଗ-ଜେବ୍‌ଙ୍କ ପରେ ଆଲିବର୍ଦ୍ଦି ଖାଁ ବଙ୍ଗ ଓ ଓଡ଼ିଶାର ଶାସନକର୍ତ୍ତା ହେଲେ । ସେତେବେଳେ ମୋଗଲ ସମ୍ରାଟଙ୍କ କ୍ଷମତା ବହୁତ କମିଯାଇଥିଲା । ତାଙ୍କୁ ଦୁର୍ବଳ ଦେଖି ଆଲିବର୍ଦ୍ଦି ଖାଁ ନିଜକୁ ସ୍ୱାଧୀନ ନବାବ ବୋଲି ଘୋଷଣା କଲେ ।

ଶିବାଜୀଙ୍କ ମୃତ୍ୟୁର କେତେକ କାଳ ପରେ ମରହଟ୍ଟାମାନେ ପାଞ୍ଚ ଦଳ ହୋଇଗଲେ । ଦଳେ ନାଗପୁରରେ ରହିଲେ । ରଘୁଜୀ ଭୋନ୍‌ସଲା ନାଗପୁରର ରାଜା ହେଲେ । ରଘୁଜୀ ଓଡ଼ିଶାରେ ପଶି ଧନରତ୍ନ ଲୁଟି କଲେ । ପ୍ରଜାଙ୍କଠାରୁ ଜୋର ଜବରଦସ୍ତି କରି ଖଜଣା ଆଦାୟ କଲେ । ନବାବ ଆଲିବର୍ଦ୍ଦି ଖାଁ ବହୁତ ଚେଷ୍ଟା କରି ପାରିଲେ ନାହିଁ । ଶେଷରେ ତାଙ୍କୁ ଓଡ଼ିଶା ଛାଡ଼ିଦେଲେ । ରଘୁଜୀ ଜଣେ ସୁବାଦାର ରଖି ଓଡ଼ିଶା ଶାସନ କଲେ । ମରହଟ୍ଟାମାନେ ଖ୍ରୀ ୧୭୫୧ ଠାରୁ ୧୮୦୩ ଖ୍ରୀ ପର୍ଯ୍ୟନ୍ତ ରାଜତ୍ୱ କଲେ । ଓଡ଼ିଶାର ପ୍ରଥମ ସୁବାଦାରଙ୍କ ନାଁ ଶିବଭଟ ସାମନ୍ତରାୟ । ଅନ୍ୟ ସୁବାଦାରମାନଙ୍କ ମଧ୍ୟରେ ଭବାନୀ ପଣ୍ଡିତ ଓ ରାଜାରାମ ପଣ୍ଡିତ ପ୍ରଧାନ ।

Digitized by srujanika@gmail.com

ମରହଟ୍ଟା ରାଜାମାନଙ୍କ ଅମଳରେ କୋଣାର୍କରୁ ଅରୁଣ ସ୍ତମ୍ଭ ଅଣାଯାଇ ପୁରୀ ବଡ ଦେଉଳରେ ରଖାଗଲା । ବଡ ଦେଉଳର ଭୋଗମଣ୍ଡପ ତିଆରି ହୋଇଥିଲା ଓ କାଠଯୋଡ଼ୀର ପଥରବନ୍ଧ ଓ ବାରବାଟୀ ଦୁର୍ଗ ମରାମତି ହୋଇଥିଲା ।

ମରହଟ୍ଟା ରାଜତ୍ବରେ ଲୋକେ ସୁଖଶାନ୍ତିରେ ନ ଥିଲେ । ମରହଟ୍ଟା ସୈନ୍ୟ ବର୍ଗମାନେ ଗାଁ ଗାଁ ପଶି ଧନରତ୍ନ ଲୁଟି କରି ନେଇଯାଉଥିଲେ, ଶାସନଶୃଙ୍ଖଳା ନ ଥିଲା ।

---

# ଭାରତକୁ ବିଦେଶୀଙ୍କ ଆଗମନ

ଆଗରୁ କୁହାଯାଇଛି ଯେ, ଭାରତ ଅତି ଉର୍ବର ଦେଶ । ଏଠାରେ ବେପାର ବାଣିଜ୍ୟର ଯେତେ ସୁବିଧା ଅଛି, ଅନ୍ୟ ଦେଶରେ ନାହିଁ । ଏ ଦେଶରେ ସୁନା ଫଳେ ବୋଲି କଥା ଅଛି । ତେଣୁ ଯୁଗେ ଯୁଗେ ସବୁ ଜାତିର ଆଖି ଭାରତ ଉପରେ ପଡ଼ିଆସିଛି ।

ପୂର୍ବେ ଜାହାଜ ଚଢ଼ି ଇଉରୋପରୁ ଭାରତକୁ ଆସିବା ପାଇଁ ଇଉରୋପର ଲୋକେ ଜଳପଥ ଜାଣି ନ ଥିଲେ । କେବଳ ଆରବ ଦେଶର ଲୋକେ ଜାହାଜରେ ଆସି ଏ ଦେଶର କେତେକ ସ୍ଥାନରେ ବେପାର ବାଣିଜ୍ୟ କରୁଥିଲେ । ଭାରତର ଜଳବାୟୁ ଭଲ ଓ ଏଠାରେ ସବୁ ଜିନିଷ ମିଳେ, ଏ କଥା ଇଉରୋପର ଲୋକେ ଜାଣିବା ଦିନୁଁ ଲୋଭ ସମ୍ଭାଳି ନ ପାରି ଏ ଦେଶକୁ ଆସିବା ପାଇଁ ବାଟ ଖୋଜିବାରେ ଲାଗିଲେ ।

ପ୍ରଥମେ ୧୪୯୨ ଖ୍ରୀଷ୍ଟାବ୍ଦରେ ପର୍ତ୍ତୁଗାଲ ଦେଶର କଲମ୍ବସ ଭାରତ ଉଦ୍ଦେଶ୍ୟରେ ଜାହାଜ ଚଢ଼ି ବାହାରିଲେ । ମାତ୍ର ସେ ସମୁଦ୍ରରେ ବାଟ ବଣା ହୋଇ ଆମେରିକା ମହାଦେଶରେ ଯାଇ ପହଞ୍ଚିଲେ । ଏହାର ଛଅ ବର୍ଷ ପରେ ୧୪୯୮ ଖ୍ରୀଷ୍ଟାବ୍ଦରେ ସେହି ଦେଶର ଭାସ୍କୋଡାଗାମା ବୋଲି ଜଣେ ନାବିକ ଆଫ୍ରିକା ମହାଦେଶର ଦକ୍ଷିଣ ପଟେ ବୁଲିଆସି ଭାରତରେ ପହଞ୍ଚିଲେ । ସେହି ଦିନଠାରୁ ପର୍ତ୍ତୁଗାଲବାସୀ ଭାରତର ପଶ୍ଚିମ ଉପକୂଳରେ ବାଣିଜ୍ୟ ଆରମ୍ଭ

Digitized by srujanika@gmail.com

କଲେ । ଅଳ୍ପ କେତେ ଦିନ ମଧ୍ୟରେ ସେମାନଙ୍କର ବେଶ୍ ଉନ୍ନତି ହେଲା । ଗୋଆ ନଗରୀକୁ ସେମାନେ ପ୍ରଧାନ ବାଣିଜ୍ୟକେନ୍ଦ୍ର କରି ଗଢିଲେ । ତାଙ୍କ ଦେଖାଦେଖି କ୍ରମେ ଓଲନ୍ଦାଜ, ଇଂରେଜ, ଦିନାମାର ଓ ଫରାସୀ ପ୍ରଭୃତି ଅନ୍ୟାନ୍ୟ ଇଉରୋପୀୟ ଜାତି ଭାରତକୁ ଆସିଲେ ।

ପର୍ତ୍ତୁଗିଜ୍‌ମାନେ ଆସିବାର ପ୍ରାୟ ଶହେ ବର୍ଷ ପରେ ହଲାଣ୍ଡବାସୀ [ଓଲନ୍ଦାଜ] ଏ ଦେଶକୁ ଆସି ଜାଭା, ସୁମାତ୍ରା, ବୋର୍ଣ୍ଣୁ ଓ ପ୍ରଭୃତି ଦେଶ-ମାନଙ୍କରେ ବେପାର ଆରମ୍ଭ କଲେ ।

ଓଲନ୍ଦାଜମାନେ ଆସିବାର କିଛିଦିନ ପରେ ଡେନମାର୍କବାସୀ ବା ଦିନାମାରମାନେ ଆସି ଭାରତରେ ବାଣିଜ୍ୟ ଆରମ୍ଭ କଲେ । ଶ୍ରୀରାମପୁର ସେମାନଙ୍କର ପ୍ରଧାନ କେନ୍ଦ୍ର ଥିଲା । ସେମାନେ ୧୮୪୫ ଖ୍ରୀଷ୍ଟାବ୍ଦରେ ତାହା ଇଂରେଜମାନଙ୍କୁ ବିକି ଦେଇଥିଲେ ।

ଯେତେବେଳେ ଆକବର ଭାରତର ସମ୍ରାଟ୍, ସେତେବେଳେ ଏଲିଜାବେଥ ଇଂଲଣ୍ଡର ରାଣୀ ଥିଲେ । ତାଙ୍କର ରାଜୁତିରେ ୧୬୦୦ ଖ୍ରୀଷ୍ଟାବ୍ଦରେ ସେଠାରୁ କେତେ ବଣିକ ଭାରତରେ ବେପାର କରିବା ଲାଗି ତାଙ୍କଠାରୁ ଏକ ସନନ୍ଦ ଆଣିଲେ । ଏହି ବଣିକଦଳ "ଇଷ୍ଟ ଇଣ୍ଡିଆ କମ୍ପାନି" ଗଢି ଏ ଦେଶରେ ବେପାର ବାଣିଜ୍ୟ ଆରମ୍ଭ କଲେ । ପ୍ରଥମେ ଏ କମ୍ପାନିର ତିନି ଲକ୍ଷ ଟଙ୍କା ମୂଳ ପାଣ୍ଠି ଥିଲା । ତିନୋଟି ଜାହାଜ ନେଇ ଏମାନେ ବେପାର ପାଇଁ ଆସିଥିଲେ ।

ଓଲନ୍ଦାଜମାନେ ଭାରତୀୟ ଦ୍ୱୀପପୁଞ୍ଜରେ ବେପାର କରୁଥିବା ଦେଖି ଇଂରେଜମାନେ ଖାସ୍ ଭାରତ ଆଡକୁ ଦୃଷ୍ଟି ପକାଇଲେ । ସେମାନଙ୍କୁ ପର୍ତ୍ତୁ-ଗିଜମାନେ ବାଧା ଦେଲେ; ମାତ୍ର ପାରିଲେ ନାହିଁ । ଇଂରେଜମାନେ ଖୋଦ ମୋଗଲ ସମ୍ରାଟଙ୍କଠାରୁ ଅନୁମତି ନେଇ ନାନା ସ୍ଥାନରେ ବାଣିଜ୍ୟ କୋଠି ସ୍ଥାପନ କଲେ । ଭାରତରେ ରାଜ୍ୟ ଗଢିବା ଇଚ୍ଛାରେ ସେମାନେ ଆସି ନ ଥିଲେ; ମାତ୍ର ବେଳେ ବେଳେ ମୋଗଲମାନଙ୍କଠାରୁ ବାଣିଜ୍ୟ ବ୍ୟବସାୟରେ ବାଧା ପାଇବାରୁ ସ୍ଥାୟୀ ଭାବରେ ବାଣିଜ୍ୟ ସୁବିଧା ଲାଗି ରାଜ୍ୟ-ବିସ୍ତାରରେ ଇଚ୍ଛା କଲେ ।

Digitized by srujanika@gmail.com

ଇଂରେଜମାନେ ୧୬୩୯ ଖ୍ରୀଷ୍ଟାବ୍ଦରେ ଚନ୍ଦ୍ରଗିରିର ହିନ୍ଦୁ ରାଜାଙ୍କଠାରୁ ମାନ୍ଦ୍ରାଜକୁ କିଣିନେଇ ସେଠାରେ ଗୋଟିଏ ଦୁର୍ଗ ତୋଳିଲେ । ତାହା ହେଉଛି, ସେଣ୍ଟଜର୍ଜ ଦୁର୍ଗ ।

ବମ୍ବେ ସହର ପର୍ତ୍ତୁଗିଜମାନଙ୍କ ହାତରେ ଥିଲା । ୧୬୯୨ ରେ ଇଂଲଣ୍ଡର ରାଜା ଦ୍ୱିତୀୟ ଚାର୍ଲସ୍ ପର୍ତ୍ତୁଗାଲ ରାଜକନ୍ୟାଙ୍କୁ ବିବାହ କରି ଯୌତୁକରୂପେ ତାହା ପାଇଲେ ଏବଂ ବାର୍ଷିକ ଦଶ ପାଉଣ୍ଡ ଖଜଣାରେ ଇଷ୍ଟଇଣ୍ଡିଆ କମ୍ପାନି ହାତରେ ତାକୁ ଛାଡିଦେଲେ । ସେତେବେଳେ ଏହି ଅଞ୍ଚଳର ଆଖପାଖ ସ୍ଥାନରେ ବରାବର ଲଢେଇ ଚାଲିଥିଲା; କିନ୍ତୁ ଇଂରେଜଙ୍କ ଦୁର୍ଗ ନିକଟରେ ସେପରି କିଛି ଗୋଳମାଳ ନ ଥିଲା । କାରଣ କି ମୋଗଲ କି ମରହଟ୍ଟା କେହି ଇଂରେଜଙ୍କ ସଙ୍ଗେ ବିବାଦୀ ହୋଇଉଠିବାକୁ ସାହସ କରୁ ନ ଥିଲେ । ଅନେକ ଲୋକ ସେମାନଙ୍କ ପାଖରେ ଆଶ୍ରୟ ନେଉଥିଲେ । ଫଳରେ ଏହି ସବୁ ସ୍ଥାନରେ ବେପାର ବାଣିଜ୍ୟ ଭଲଭାବରେ ଚାଲିଲା ।

୧୬୩୬ ଖ୍ରୀଷ୍ଟାବ୍ଦରେ ମୋଗଲ ସମ୍ରାଟଙ୍କ ଝିଅ ବେମାରରେ ପଡିଲେ । ତାଙ୍କୁ ଭଲ କରିବା ପାଇଁ ସୁରାଟଠାରୁ ଇଂରେଜ ଡାକ୍ତରଙ୍କୁ ଡକରା ହେଲା । ସେ ଆସି ଜେମାଙ୍କୁ ଭଲ କରିଦେଲେ । ଡାକ୍ତର ପୁରସ୍କାରସ୍ୱରୂପ ସମ୍ରାଟଙ୍କୁ ମାଗିଲେ—ମୋ ଜାତିର ଲୋକଙ୍କୁ ବଙ୍ଗଳାରେ ବିନା ମାସୁଲରେ ବେପାର ବଣିଜ କରିବାର ସୁବିଧା ମିଳୁ । ସମ୍ରାଟ୍ ଏ କଥା ମଞ୍ଜୁର କରିଦେଲେ । ଏହି ଘଟଣାର ଦୁଇ ବର୍ଷ ପରେ ସମ୍ରାଟଙ୍କ ଉଆସର ଆଉ ଏକ ସ୍ତ୍ରୀଲୋକକୁ ସେହି ଡାକ୍ତର ଭଲ କରି ଦେଇ ଇଂରେଜମାନେ ବାଲେଶ୍ୱର ଓ ହୁଗୁଳି-ଠାରେ ବାଣିଜ୍ୟ କୋଠି ତୋଳି ପାରିବେ—ଏହି କ୍ଷମତା ତାଙ୍କଠାରୁ ପାଇଲେ ।

ମୋଗଲ ସମ୍ରାଟ୍ ଆଉରଙ୍ଗଜେବଙ୍କ ସମୟରେ ଥରେ ଇଂରେଜମାନଙ୍କ ଉପରେ ଘୋର ଅତ୍ୟାଚାର ହେଲା । ମୋଗଲ ସେନା ଓ ଇଂରେଜଙ୍କ ମଧ୍ୟରେ ଘୋର ଯୁଦ୍ଧ ଚାଲିଲା । ବଙ୍ଗର ନବାବ ସାୟସ୍ତ ଖାଁ ଇଂରେଜଙ୍କ

Digitized by srujanika@gmail.com

ହୁଗୁଳିରେ ଥିବା ବାଣିଜ୍ୟକୋଠି ଆକ୍ରମଣ କଲେ । ଇଂରେଜମାନେ ତାହା ରକ୍ଷା କରି ନ ପାରି ବଙ୍ଗ ଛାଡ଼ି ଚାଲିଯିବାକୁ ବସିଲେ । ମାତ୍ର ଇଂରେଜମାନଙ୍କୁ ଜଳଯୁଦ୍ଧରେ ପାରିବା ସହଜ ନୁହେଁ । ତେଣୁ ସମ୍ରାଟ୍ ବାଧ୍ୟ ହୋଇ ସେମାନଙ୍କ ସହିତ ସନ୍ଧି କଲେ । ଏହି ସନ୍ଧି ପରେ ଇଂରେଜମାନେ ଆଉ ହୁଗୁଳିକୁ ନ ଯାଇ ସୁତାନଟି ବୋଲି ଆଉ ଏକ ସ୍ଥାନରେ କୋଠି ତୋଳିଲେ । କିଛିଦିନ ପରେ ତାହାର ନିକଟରେ ଗୋବିନ୍ଦପୁର ଓ କାଲିଘାଟ ବୋଲି ଆଉ ଦୁଇଖଣ୍ଡି ଗାଁ କିଣିଲେ । ଏହି ତିନୋଟି ଗାଁରୁ ବର୍ତ୍ତମାନ କଲିକତା ସହର ହୋଇଛି । ଏଠାରେ ଇଂରେଜମାନେ ଗୋଟିଏ ଦୁର୍ଗ ତୋଳି ଇଂଲଣ୍ଡର ସେ ସମୟର ରାଜା ଉଇଲିୟମଙ୍କ ନାଁ ଅନୁସାରେ ଦୁର୍ଗର ନାଁ ଦେଲେ "ଫୋର୍ଟ୍ ଉଇଲିୟମ"। ସେହି ସମୟରେ ସେ ସ୍ଥାନ ଖାଲି ବଣ ଜଙ୍ଗଲରେ ପୂରିଥିଲା । ଜୁଆରରେ ସମୁଦ୍ର ପାଣି ମାଡ଼ିଯାଉଥିଲା । ବଣରେ ବାଘ ଓ ପାଣିରେ କୁମ୍ଭୀର ନାନା ଉପଦ୍ରବ ଘଟାଉଥିଲେ । କିନ୍ତୁ ଇଂରେଜ ବସତି ଆରମ୍ଭ ହେବା ଦିନୁ ଏ ସବୁ ଆସ୍ତେ ଆସ୍ତେ ଦୂର ହୋଇଗଲା । ଆଜି ସେହି ସାମାନ୍ୟ ତିନୋଟି ଗାଁ ବଦଳରେ ସେଠାରେ ପ୍ରକାଣ୍ଡ କଲିକତା ସହର ଠିଆହୋଇ ବ୍ରିଟିଶ୍ ସାମ୍ରାଜ୍ୟ ମଧ୍ୟରେ ଦ୍ୱିତୀୟ ସ୍ଥାନ ଅଧିକାର କରିଛି ।

ଇଂରେଜ ଓ ଅନ୍ୟାନ୍ୟ ଜାତିର ଲୋକଙ୍କ ଦେଖାଦେଖି ୧୬୬୦ ଖ୍ରୀଷ୍ଟାବ୍ଦରେ ଫ୍ରାନ୍ସ ଦେଶର ଲୋକେ ଏ ଦେଶକୁ ବାଣିଜ୍ୟ କରିବାକୁ ଆସିଲେ । ସେମାନେ ପ୍ରଥମେ ସୁରାଟରେ ଓ ପରେ ପଣ୍ଡିଚେରୀ ଓ ଚନ୍ଦନନଗରଠାରେ ବାଣିଜ୍ୟକୋଠିମାନ ତିଆରି କଲେ । ପଣ୍ଡିଚେରୀ ସେମାନଙ୍କର ପ୍ରଧାନ ବାଣିଜ୍ୟ କେନ୍ଦ୍ର ହେଲା । କ୍ରମେ କ୍ରମେ ସେମାନଙ୍କ କ୍ଷମତା ଅଦ୍ଭୁତ ଭାବରେ ବଢିବାକୁ ଲାଗିଲା । ଆଗରୁ ଇଂରେଜ ଓ ଫରାସୀ ଜାତି ମଧ୍ୟରେ ବରାବର ଅପଡ଼ । ଭାରତକୁ ଆସି ସେମାନେ ପରସ୍ପର ମଧ୍ୟରେ କଳି ଆରମ୍ଭ କଲେ । ଏ ପର୍ଯ୍ୟନ୍ତ ପଣ୍ଡିଚେରୀ ଓ ଚନ୍ଦନନଗରରେ ଫରାସୀମାନଙ୍କର ଅଧିକାର ଅଛି । ପଣ୍ଡିଚେରୀଠାରେ ଫରାସୀ ଗଭର୍ଣ୍ଣର ଥାନ୍ତି ।

---

Digitized by srujanika@gmail.com

**ସୁରାଜ ଉଦ୍ଦୌଲା —**

ଆଲିବର୍ଦ୍ଦି ଖାଁ ବଙ୍ଗଳାର ସୁବାଦାର ସରଫରାଜଙ୍କର ମନ୍ତ୍ରୀ ଥିଲେ । ଏକ ଯୁଦ୍ଧରେ ସେ ନିଜ ମୁନିବଙ୍କୁ ମାରି ନିଜେ ସୁବାଦାର ହୋଇପଡ଼ିଲେ । ଏହି ଘଟଣାର କିଛିଦିନ ପରେ ଦିଲ୍ଲୀ ବାଦଶାହଙ୍କୁ କର ନ ଦେଇ ସେ ସ୍ୱାଧୀନ ମଧ୍ୟ ହୋଇଗଲେ । ତାଙ୍କ ନିଜର ପୁଅ ନ ଥିଲା । ତେଣୁ ସେ ମଲା ପରେ ତାଙ୍କ ଝିଅର ପୁଅ ସୁରାଜଉଦ୍ଦୌଲା କୋଡ଼ିଏ ବର୍ଷ ବୟସରେ ଗାଦୀରେ ବସିଲେ । ସୁରାଜ କିଛି ପାଠଶାଠ ପଢ଼ି ନ ଥିଲେ । ପିଲାଦିନୁ ସେ ଭାରି ନିଷ୍ଠୁର ଓ ବିଳାସୀ ଥିଲେ । କୌତୁକ ଦେଖିବା ପାଇଁ ମଣିଷ ବୋଝେଇ ଡଙ୍ଗାକୁ ପାଣିରେ ବୁଡ଼ାଇ ଦେଉଥିଲେ । ପେଟ ଭିତରର ପିଲା ଦେଖିବାପାଇଁ ଗର୍ଭିଣୀ ସ୍ତ୍ରୀର ପେଟ ଚିରି ପକାଉଥିଲେ । ତାଙ୍କ ଅତ୍ୟାଚାରରେ ଲୋକେ ବିଦ୍ରୋହୀ ହୋଇଉଠିଲେ ।



ଏହି ସମୟରେ ଢାକାର ଶାସନକର୍ତ୍ତା ରାଜବଲ୍ଲଭଙ୍କ ପୁଅ କୃଷ୍ଣଦାସଙ୍କ ପାଖରେ ବହୁତ ସମ୍ପତ୍ତି ଜମା ଥିଲା । ସୁରାଜଙ୍କ ଆଖି ତା ଉପରେ ପଡ଼ିଲା । କୃଷ୍ଣଦାସ ତାଙ୍କ ଭୟରେ କଲିକତା ପଳାଇ ଇଂରେଜଙ୍କ ଆଶ୍ରୟ ନେଲେ । ସେତେବେଳକୁ ଇଂରେଜମାନେ ବେପାର କରି ଦୁର୍ଗ ମରାମତି କରୁଥାନ୍ତି । ସେ ଇଂରେଜଙ୍କୁ ଧମକାଇ ଖଣ୍ଡିଏ ଚିଠି ଲେଖିଲେ — ବିଳମ୍ବ ନ କରି କୃଷ୍ଣଦାସଙ୍କୁ ଫେରାଇଦିଅ ଓ ଦୁର୍ଗତୋଳା ବନ୍ଦ କର । ଏଥିର କିଛି ଉତ୍ତର ନ ପାଇ ସେ ରାଗରେ ତାତି ଉଠିଲେ ଏବଂ ସଙ୍ଗେ ସଙ୍ଗେ [illegible] ହଜାର ସୈନ୍ୟ ନେଇ କଲିକତା ଆକ୍ରମଣ କଲେ । ଇଂରେଜମାନଙ୍କର ଅତି ଅଳ୍ପ ସୈନ୍ୟ

Digitized by srujanika@gmail.com

ଥିଲେ । ତଥାପି ସେମାନେ ଚାରି ଦିନ କାଳ ଶତ୍ରୁକୁ ବାଧା ଦେଇ ଶେଷକୁ ଶରଣ ମାଗିଲେ । ଏହି ଯୁଦ୍ଧରେ ନବାବଙ୍କର ଜଣେ କର୍ମଚାରୀ ଦୁର୍ଗ ଭିତରେ ଗୋଟିଏ ଛୋଟ କୋଠରୀରେ ୧୪୪ ଜଣ ଇଂରେଜଙ୍କୁ ଭର୍ତ୍ତି କରି ବନ୍ଦୀ କଲେ । ଏ କଥା ନବାବ ଜାଣନ୍ତି ନାହିଁ । ସେ ସମୟଟା ନିଦାଘ ଖରା ଦିନ । ବନ୍ଦୀମାନେ ପାଣି ପବନ ଅଭାବରେ ଛଟପଟ ହେଲେ । ସକାଳୁ ଦେଖିଲାବେଳକୁ ୧୨୩ ଜଣ ଗୋରାଙ୍କ ପ୍ରାଣବାୟୁ ଉଡ଼ିଯାଇଛି, ବାକୀ ୨୩ ଜଣ ଦରମରା ହୋଇ ପଡ଼ିଛନ୍ତି । ଏହି ହତ୍ୟାକାଣ୍ଡକୁ 'ଅନ୍ଧକୂପ' ହତ୍ୟା କହନ୍ତି ।

## କ୍ଲାଇବ—

କ୍ଲାଇବ ଜାତିରେ ଇଂରେଜ । ପିଲାଦିନେ ସେ ଭାରି ଦୁଷ୍ଟ ଥିଲେ । ସ୍କୁଲକୁ ଗଲେ କୋଳାହଳ ଛଡ଼ା ପାଠ ପଢ଼ାରେ ମନ ଧରୁ ନ ଥିଲେ । ବାଟ ଘାଟରେ ସମସ୍ତଙ୍କ ସଙ୍ଗେ ମାଡ଼ଗୋଳ କରୁଥିଲେ । ତାଙ୍କର ଏ ଦୁଷ୍ଟପଣିଆ ଦେଖି ବାପମା ତାଙ୍କୁ ସ୍କୁଲରୁ ଉଠାଇ ଆଣି କଣ୍ଟ୍ରୋଲ ଘରେ ରଖିଲେ । ସେହି ସମୟରେ ଇଂଲଣ୍ଡରୁ ଭାରତକୁ ଇଷ୍ଟ ଇଣ୍ଡିଆ କମ୍ପାନୀର ଏକ ଜାହାଜ ଆସୁଥିଲା । ତେଣୁ କ୍ଲାଇବଙ୍କ ଦାଉରୁ ରକ୍ଷା ପାଇବା ପାଇଁ ବାପ ମା ତାଙ୍କୁ ଭାରତକୁ ପଠାଇ ଦେଲେ । ଭାରତର ଜଳବାୟୁ ତାଙ୍କ ଦେହରେ ଠିକ ନାହିଁ ଓ ସେଠାରେ ମରିଯିବେ ବୋଲି ବାପମା ବିଶ୍ୱାସ



କ୍ଲାଇବ

Digitized by srujanika@gmail.com

ନଷ୍ଟିକ୍ ରହୁଲେ । ଏଣେ କ୍ଲାଇବ ଭାରତକୁ ଆସି କମ୍ପାନୀର ଏକ କିରାଣି ହୋଇ ମାନ୍ଦ୍ରାଜଠାରେ ରହୁଲେ । ଯେତେବେଳକୁ ତାଙ୍କୁ ମୋଟେ ୧୯ ବର୍ଷ ବୟସ । ଏ ଦେଶକୁ ଆସି ମଧ୍ୟ ତାଙ୍କ ଦୁଷ୍ଟପଣ ଗଲା ନାହିଁ । ସବୁବେଳେ ନିଜ ହାକିମଙ୍କୁ ଅମାନିଆ ହେଲେ । ପୁଣି ମାନ୍ଦ୍ରାଜର ଠାଣ ଖରା ତାଙ୍କ ଦେହରେ ଗଲା ନାହିଁ । ସବୁବେଳେ ବେମାରରେ ପଡ଼ିଲେ । ନିଜର ଦେଶ, ବାପ ଭାଇ, ବନ୍ଧୁ ବାନ୍ଧବଙ୍କୁ ଛାଡ଼ି ଆସି ଏ ଦେଶରେ ଏକୁଟିଆ ରହୁବାକୁ ତାଙ୍କୁ ଆଦୌ ଭଲ ଲାଗିଲା ନାହିଁ । ଘରକୁ ଫେରିଗଲେ ବାପମା ସୁଖ ପାଇବେ ନାହିଁ, ଏ କଥା ସେ ଭଲ କରି ଜାଣିଥିଲେ । ଏ କଥା ସବୁ ବିଚାରି ଆତ୍ମହତ୍ୟା କରି ମରିବା ପାଇଁ ଥରେ ସେ ବନ୍ଧୁକ ଧଇଲେ । ଦୁଇ ଥର ଫୁଟାଇଲେ; ମାତ୍ର ବନ୍ଧୁକ ଫୁଟିଲା ନାହିଁ । ଜଣେ ବନ୍ଧୁ ଆସି ବନ୍ଧୁକଟି ନେଇଯିବା ପରେ ବନ୍ଧୁକ ଫୁଟିଲା ।

ଏହି ଘଟଣାର କିଛିଦିନ ପରେ ଫରାସୀ ଓ ଇଂରେଜଙ୍କ ମଧ୍ୟରେ ଯୁଦ୍ଧ ହେଲା । କ୍ଲାଇବ ଯେତେବେଳେ ଶୁଣିଲେ ଯେ, ଇଂରେଜମାନେ ପରାସ୍ତ ହୋଇଛନ୍ତି, ସେ ଆଉ ସମ୍ଭାଳି ପାରିଲେ ନାହିଁ । କଲମ ଫିଙ୍ଗିଦେଇ ଖଣ୍ଡା ଧଇଲେ । ସଙ୍ଗେ ସଙ୍ଗେ ଯାଇ ସେନାଦଳରେ ଯୋଗ ଦେଲେ । ଅଳ୍ପ କେତେ ଦିନ ମଧ୍ୟରେ ସେ ଯୁଦ୍ଧବିଦ୍ୟାରେ ଧୁରନ୍ଧର ହୋଇପଡ଼ିଲେ ଓ ସେନାପତି ହୋଇ ଯୁଦ୍ଧ ଚଳାଇଲେ । ତାଙ୍କରି ଯୋଗୁଁ ଭାରତରେ ଇଂରେଜଙ୍କ ମାନମହତ୍ତ୍ୱ ରହିଲା ଓ ଶେଷକୁ ଏତେ ବଡ଼ ସାମ୍ରାଜ୍ୟ ଗଢ଼ା ହେଲା ।

## ପଲାସୀ ଯୁଦ୍ଧ—

ଅନ୍ଧକୂପ ହତ୍ୟାର ଖବର ଯାଇ ମାନ୍ଦ୍ରାଜରେ ପହଞ୍ଚିଲା । ସଙ୍ଗେ ସଙ୍ଗେ କ୍ଲାଇବ ଦଳେ ସୈନ୍ୟ ନେଇ ବାହାରିପଡ଼ିଲେ । ଏଣେ ନବାବ ନିଜ ସେନାପତି ମାଣିକଚାନ୍ଦଙ୍କ ଜିମା କଲିକତା ଛାଡ଼ିଦେଇ ନିଜ ରାଜଧାନୀ ମୁର୍ଶିଦାବାଦକୁ ଫେରି ଯାଇଥିଲେ । ଯେତେବେଳେ ଇଂରେଜ ସୈନ୍ୟଙ୍କ ତୋପ ଶବ୍ଦ ଶୁଭିଲା, ମାଣିକଚାନ୍ଦ ଭୟରେ ସହର ଛାଡ଼ି ପଳାଇଲେ । କ୍ଲାଇବ ଅତି ସହଜରେ କଲିକତା ସହରକୁ ଅଧିକାର କରିନେଲେ ।

Digitized by srujanika@gmail.com

ଏହା ପରେ ସୁରାଜଙ୍କ ଅତ୍ୟାଚାର ଦିନକୁ ଦିନ ବଢ଼ିଲା । ରାଜ୍ୟର ହିନ୍ଦୁ ମୁସଲମାନ ସକଳ ପ୍ରଜା ତାଙ୍କ ବିରୁଦ୍ଧରେ ମାତିଉଠିଲେ । ତାଙ୍କୁ ଗାଦୀରୁ ତଡ଼ିଦେଇ ତାଙ୍କ ସେନାପତି ମିରଜାଫରଙ୍କୁ ନବାବ କରିବା ପାଇଁ ଏକ ଷଡଯନ୍ତ୍ର ଚାଲିଲା । କେହି କେହି ଆସି ଏଥିରେ କ୍ଲାଇବଙ୍କ ସାହାଯ୍ୟ ଲୋଡ଼ିଲେ । ସାହାଯ୍ୟ ଦେବାପାଇଁ କ୍ଲାଇବ ପଛଘୁଞ୍ଚା ଦେଲେ ନାହିଁ । ସେ ଦେଖିଲେ, ସୁରାଜ ଥିବା ପର୍ଯ୍ୟନ୍ତ ଇଂରେଜମାନେ ନିଶ୍ଚିନ୍ତରେ ବଙ୍ଗଳାରେ ବାଣିଜ୍ୟ କରିପାରିବେ ନାହିଁ । ତେଣୁ ସେ ସୁରାଜଙ୍କ ବିପକ୍ଷ ଦଳକୁ ସାହାଯ୍ୟ ଦେଇ ଦଳେ ସୈନ୍ୟ ଧରି ମୁର୍ଶିଦାବାଦ ଆକ୍ରମଣ କରିବାକୁ ଗଲେ । ତାଙ୍କୁ ବାଧା ଦେବାକୁ ସୁରାଜ ସୈନ୍ୟ ନେଇ ବାହାରିଲେ । ଦୁଇ ପକ୍ଷର ଯୁଦ୍ଧ ଚାଲିଲା । ଯେଉଁ ସ୍ଥାନରେ ଦୁଇ ପକ୍ଷର ଯୁଦ୍ଧ ହୋଇଥିଲା, ସେହି ସ୍ଥାନର ନାମ 'ପଲାସୀ' । ଯୁଦ୍ଧବେଳେ ବିଶ୍ୱାସଘାତକ ମିରଜାଫର କେଉଁ ପକ୍ଷ ଜିଣିବେ, ଏହି ଅପେକ୍ଷାରେ ରହି କ୍ଲାଇବଙ୍କ ସଙ୍ଗେ ଯୋଗ ଦେଇ ନ ଥିଲେ । କ୍ଲାଇବ ଜିଣିବାରୁ ତାଙ୍କ ସଙ୍ଗେ ଯାଇ ମିଶିଗଲେ । କ୍ଲାଇବ ତାଙ୍କୁ ନବାବ ବୋଲି ସ୍ୱୀକାର କଲେ । ସୁରାଜ ଯୁଦ୍ଧରୁ ପଳାଇଲେ । ମାତ୍ର ବାଟରେ ଧରାପଡ଼ି ମିରଜାଫରଙ୍କ ପୁଅଙ୍କଦ୍ୱାରା ନିହତ ହେଲେ ।

## ଫରାସୀ ଇଂରେଜ କଳି—

ପ୍ରଥମ କର୍ଣ୍ଣାଟ ସମର---

ଆଗରୁ ଫରାସୀ ଓ ଇଂରେଜଙ୍କ ମଧ୍ୟରେ ଶତ୍ରୁତା ଥିଲା । ୧୭୪୪ ଖ୍ରୀଷ୍ଟାବ୍ଦରେ ଇଉରୋପରେ ଏହି ଦୁଇ ଜାତିର ଲଢ଼େଇ ହେବାରୁ ଭାରତରେ ମଧ୍ୟ ଗୋଳମାଳ ଆରମ୍ଭ ହେଲା । ସେତେବେଳେ ଇଂରେଜମାନେ ମାନ୍ଦ୍ରାଜରେ ଓ ଫରାସୀମାନେ ପଣ୍ଡିଚେରୀରେ ବାଣିଜ୍ୟ କରୁଥିଲେ । ଏହି ଦୁଇଟି ସ୍ଥାନ କର୍ଣ୍ଣାଟର ନବାବଙ୍କ ଅଧୀନରେ ଥିଲା ।

ସେତେବେଳେ ଇଂରେଜମାନଙ୍କ ରାଜ୍ୟ ବିସ୍ତାରର ଇଚ୍ଛା ନ ଥିଲା । ସେଣ୍ଟ ଜର୍ଜ ଦୁର୍ଗର ଜଗୁଆଳ ଛଡ଼ା ସେମାନଙ୍କର ଅନ୍ୟ ସେନା ନ ଥିଲେ । ମାତ୍ର ଫରାସୀମାନଙ୍କର ଇଚ୍ଛା ଅନ୍ୟ ପ୍ରକାର ଥିଲା । ଡୁପ୍ଲେ ବୋଲି ଜଣେ ଚତୁର ଲୋକ ପଣ୍ଡିଚେରୀକୁ ଶାସନ କରିବା ପାଇଁ ଗଭର୍ଣ୍ଣର ହୋଇ ଆସି-

Digitized by srujanika@gmail.com

ଥିଲେ । ଯେ ଏ ଦେଶରେ ଅନେକ ଧନ ରଖି ଦେଶ ଲୋକଙ୍କର ଗଣ୍ଠିବନ୍ଧି ବୁଝି ନେଇଥିଲେ । ଇଂରେଜମାନଙ୍କୁ ଏ ଦେଶରୁ ତଡ଼ିଦେଲେ ଫରାସୀ-ବାଣିଜ୍ୟ ନିର୍ବିଘ୍ନରେ ଚାଲିବ, ଏହି ଆଶାରେ ସେ ନାନା ଉପାୟ ଖୋଜିଲେ । ଏଠାରେ ରାଜ୍ୟ ଜିଣି ରାଜ୍ୟ ବିସ୍ତାର କରିବା ପାଇଁ ତାଙ୍କର ପ୍ରବଳ ଇଚ୍ଛା ଥିଲା । ସେଥିପାଇଁ ଏ ଦେଶର ସୈନ୍ୟମାନଙ୍କୁ ସେ ଭଲରକମର ଯୁଦ୍ଧ ଶିକ୍ଷା ଦେଇ ରଖାଇଥିଲେ ।

ଇଉରୋପରେ ୧୭୪୪ ଖ୍ରୀଷ୍ଟାବ୍ଦରେ ଫରାସୀ ଓ ଇଂରେଜମାନଙ୍କ ମଧ୍ୟରେ ଯୁଦ୍ଧ ଆରମ୍ଭ ହେଲା । ଦୁଇ ବର୍ଷ ପରେ ୧୭୪୬ ଖ୍ରୀଷ୍ଟାବ୍ଦରେ ଫରାସୀମାନେ ଏଣେ ଇଂରେଜଙ୍କ ମାନ୍ଦ୍ରାଜ ସହର ଅଧିକାର କଲେ । ଇଂରେଜମାନେ କର୍ଣ୍ଣାଟର ନବାବଙ୍କ ପାଖରେ ଗୁହାରି କଲେ । ନବାବ ଫରାସୀମାନଙ୍କୁ ହୁକୁମ୍ ଦେଲେ, "ଇଂରେଜଙ୍କୁ ତାଙ୍କ ଦୁର୍ଗ ଫେରାଇ-ଦିଅ ।" ମାତ୍ର ଡୁପ୍ଲେ ଏ କଥା ନ ଶୁଣିବାରୁ ନବାବଙ୍କ ପୁଅ ଦଶ ହଜାର ସୈନ୍ୟ ନେଇ ଫରାସୀଙ୍କ ସଙ୍ଗେ ଯୁଦ୍ଧ କଲେ । ଏ ଯୁଦ୍ଧରେ ଫରାସୀମାନେ ଜିଣିଲେ । ଇଂରେଜମାନେ ପଣ୍ଡିଚେରୀ ଆକ୍ରମଣ କରିବାକୁ ଚେଷ୍ଟା କରି, ପାରିଲେ ନାହିଁ । ୧୭୪୮ ଖ୍ରୀଷ୍ଟାବ୍ଦରେ ଇଉରୋପରେ ଏହି ଦୁଇ ଜାତି ମଧ୍ୟରେ ସନ୍ଧି ହେବାରୁ ଭାରତରେ ଯୁଦ୍ଧ ବନ୍ଦ ହେଲା । ଇଂରେଜମାନେ ମାନ୍ଦ୍ରାଜ ଫେରି ପାଇଲେ ।

## ଦ୍ୱିତୀୟ କର୍ଣ୍ଣାଟ ସମର—

ଫରାସୀ ଓ ଇଂରେଜଙ୍କ ମଧ୍ୟରେ ସନ୍ଧି ହେଲା ସିନା; ମାତ୍ର ଡୁପ୍ଲେ ଇଂରେଜଙ୍କୁ ଏ ଦେଶରୁ ତଡ଼ିବା ଉଦ୍ୟମରେ ବରାବର ରହିଲେ । ପୁଣି ଏକ ଗୋଳମାଳ ପାଇଁ ତାଙ୍କୁ ଗୋଟାଏ ସୁଯୋଗ ମିଳିଲା ।

୧୭୪୮ ଖ୍ରୀଷ୍ଟାବ୍ଦରେ ଦାକ୍ଷିଣାତ୍ୟର ସୁବାଦାର ବା ହାଇଦ୍ରାବାଦର ନିଜାମ ମରିଯିବାରୁ ତାଙ୍କ ମାନ ପୁଅ ନାଜିର ଏବଂ ନାତି ମୁଜାଫର ସିଂହାସନ ପାଇଁ କଳି ଲଗାଇଲେ । ଠିକ୍ ସେତିକିବେଳେ କର୍ଣ୍ଣାଟର ନବାବ ପଦ ପାଇଁ ଆଗ ନବାବ ଦୋସ୍ତଆଲିଙ୍କ ଜଣେ ଜ୍ୱାଇଁ ଚନ୍ଦାସାହେବ ଚେଷ୍ଟା କରୁଥିଲେ । ଚନ୍ଦାସାହେବ ଏବଂ ମୁଜାଫର ଦୁହେଁ ଯାଇ ଫରାସୀମାନଙ୍କୁ

Digitized by srujanika@gmail.com

ସାହାଯ୍ୟ ମାଗିଲେ । ଉଭୟେ ସେମାନଙ୍କୁ ଆଗ୍ରହରେ ସାହାଯ୍ୟ ଦେଲେ ।

ଏହିପରି ଭାବରେ ବୁନ୍ଦା ସାହେବ, ମୁଜାଫର ଓ ଫରାସୀ ସୈନ୍ୟ ଯାଇ ପ୍ରଥମେ କର୍ଣ୍ଣାଟର ରାଜଧାନୀ ଆର୍କଟ ସହରକୁ ଆକ୍ରମଣ କଲେ । ନବାବ ଅନାୱାର ଉଦ୍ଦିନ ଯୁଦ୍ଧରେ ମଲେ । ତାଙ୍କ ପୁଅ ମହମ୍ମଦ ଆଲି ପ୍ରାଣ ଘେନି ତ୍ରିଚନାପଲ୍ଲିକୁ ପଳାଇ ଆଶ୍ରୟ ନେଲେ । ବୁନ୍ଦା ସାହେବ କର୍ଣ୍ଣାଟର ନବାବ ହେଲେ ।

ଏହା ପରେ ଫରାସୀ-ସେନା ଦାକ୍ଷିଣାତ୍ୟକୁ ଯାଇ ମୁଜାଫରଙ୍କ ଶତ୍ରୁ, ନାଜିରଙ୍କୁ ବଧ କଲେ । ଡୁପ୍ଲେଙ୍କ ବିଜୟବାର୍ତ୍ତା ଚାରିଆଡେ ଉଡିଲା । ନୂଆ ନିଜାମ ଫରାସୀମାନଙ୍କୁ ପୁରସ୍କାରସ୍ୱରୂପ ଉତ୍ତର-ସରକାର ରାଜ୍ୟ ଛାଡି ଦେଲେ । ବୁନ୍ଦା ସାହେବ ଡୁପ୍ଲେଙ୍କ ଅଧୀନରେ ରହି ତାଙ୍କୁ ବହୁତ ରାଜ୍ୟ ଓ ଅର୍ଥ ଦେଇଥିଲେ ।

ତେଣେ ମହମ୍ମଦ ଆଲି ତ୍ରିଚନାପଲ୍ଲିଠାରେ ରହି ଇଂରେଜଙ୍କ ସାହାଯ୍ୟ ଲୋଡିଲେ । ଏଥି ମଧ୍ୟରେ ଇଂରେଜମାନେ ହୁସିଆର ହୋଇଯାଇ ଦଳେ ସୈନ୍ୟ ପାଖରେ ରଖିଥାନ୍ତି । କାଳେ ଫରାସୀ ସେନା ତାଙ୍କୁ ଆକ୍ରମଣ କରିବେ, ଏହି ଭୟ ତାଙ୍କର ଥାଏ । ଏପରି ଅବସ୍ଥାରେ ସେମାନେ ଦେଖିଲେ ଯେ, ମହମ୍ମଦ ଆଲିଙ୍କୁ ସାହାଯ୍ୟ ନ ଦେଲେ ଫରାସୀ କ୍ଷମତା ଖୁବ୍ ବଢିଯିବ । ବିଶେଷତଃ ଏତେବେଳେ ସାହାଯ୍ୟ ଦେଲେ ସୈନ୍ୟମାନଙ୍କୁ କିଛି କାମ ମିଳିଯିବ ଓ ଫରାସୀମାନଙ୍କୁ ହଟାଇପାରିଲେ ବେପାର-ବାଣିଜ୍ୟର ସୁବିଧା ହୋଇପାରିବ । ଏହି ଆଶାରେ ସେମାନେ ତ୍ରିଚନାପଲ୍ଲିକୁ ଦଳେ ସୈନ୍ୟ ପଠାଇଲେ । କ୍ଲାଇବ୍ ଏହି ସୈନ୍ୟଦଳ ସାଙ୍ଗରେ ଯାଇଥିଲେ ।

ତ୍ରିଚନାପଲ୍ଲିଠାରେ ପ୍ରବଳ ଶତ୍ରୁସୈନ୍ୟ ପାଖରେ ଇଂରେଜମାନେ ପାରିବା ସହଜ ନୁହେଁ । ତେଣୁ କ୍ଲାଇବ ସେଠାରୁ ଫେରିଆସି ପ୍ରସ୍ତାବ କଲେ--

Digitized by srujanika@gmail.com

ଫରାସୀ-ସେନା ମଧ୍ୟରୁ ଦଳେ ତ୍ରିଚନାପଲ୍ଲିରେ, ଦଳେ ପଣ୍ଡିଚେରୀଠାରେ ଓ ଆଉ ଦଳେ ହାଇଦ୍ରାବାଦରେ ଅଛନ୍ତି ; କର୍ଣ୍ଣାଟର ରାଜଧାନୀ ଆର୍କଟଠାରେ କେହି ନାହାନ୍ତି । ଏତିକି ବେଳେ ଆର୍କଟ ଆକ୍ରମଣ କଲେ ଚନ୍ଦା ସାହେବ ହଠାତ୍ ହଟା ହୋଇ ତ୍ରିଚନାପଲ୍ଲି ଛାଡ଼ି ଆସିବେ ଏବଂ ମହମ୍ମଦ ଅଲି ରକ୍ଷା ପାଇଯିବେ ।

ଆର୍କଟ ମାନ୍ଦ୍ରାଜଠାରୁ ୭୦ ମାଇଲ ଦୂର । କ୍ଲାଇବ ମୋଟେ ୨୦୦ ଇଂରେଜ ସେନା, ୩୦୦ ଭାରତୀୟ ପାଇକ ନେଇ ବାଟରେ ସେମାନଙ୍କୁ ଯୁଦ୍ଧବିଦ୍ୟା ଶିଖାଇ ଶିଖାଇ ଯାଇ ଆର୍କଟ ଅଧିକାର କଲେ । ଚନ୍ଦା ସାହେବ ଏ ଖବର ପାଇବା ମାତ୍ରେ ନିଜ ପୁଅଙ୍କ ସଙ୍ଗେ ଦଶ ହଜାର ସୈନ୍ୟ ଦେଇ ରାଜଧାନୀ ରକ୍ଷା କରିବାକୁ ପଠାଇଲେ । ପ୍ରାୟ ଦୁଇ ମାସ କାଳ ଦୁର୍ଗ ଅବରୋଧ କରି କ୍ଲାଇବଙ୍କ ସୈନ୍ୟଙ୍କୁ ସେ ହଟାଇପାରିଲେ ନାହିଁ । ତା ଭିତରେ ରହି ଅଧେ ଇଂରେଜ ସେନା ଖାଇବାକୁ ନ ପାଇ ମରିଗଲେ । ଏହି ସମୟରେ କ୍ଲାଇବଙ୍କୁ ସାହାଯ୍ୟ ଦେବା ପାଇଁ ମାନ୍ଦ୍ରାଜରୁ ଦଳେ ସୈନ୍ୟ ଆସିଲେ । ଚନ୍ଦାସାହେବଙ୍କ ପୁଅ ହାରି ପ୍ରାଣ ଘେନି ପଳାଇଲେ । ତା ପରେ ଇଂରେଜମାନେ ତ୍ରିଚନାପଲ୍ଲି ଯାଇ ଫରାସୀମାନଙ୍କୁ ପରାସ୍ତ କରି ବନ୍ଦୀ କଲେ । ତ୍ରିଚନାପଲ୍ଲି ସେମାନଙ୍କ ହାତକୁ ଆସିଲା । ମହମ୍ମଦ ଅଲି ନବାବ ହେଲେ । ଚନ୍ଦା ସାହେବ ତାଞ୍ଜୋର ପଳାଇ ସେଠାରେ ସେଠାର ରାଜାଙ୍କଦ୍ୱାରା ନିହତ ହେଲେ ।

## ତୃତୀୟ କର୍ଣ୍ଣାଟ ସମର—

୧୭୫୬ ଖ୍ରୀଷ୍ଟାବ୍ଦରେ ଇଂରେଜ ଓ ଫରାସୀ ଜାତି ମଧ୍ୟରେ ଇଉରୋପରେ ପୁଣି ଯୁଦ୍ଧ ଲାଗିବାରୁ ଭାରତରେ ଏଣେ ଯୁଦ୍ଧ ଚାଲିଲା । ଫରାସୀ ସରକାର ଲାଲି ବୋଲି ଜଣେ ବ୍ୟକ୍ତିଙ୍କୁ ସେନାପତି ଓ ଶାସନକର୍ତ୍ତାରୂପେ ପଠାଇଥିଲେ । ପ୍ରଥମେ ସେ ଇଂରେଜଙ୍କ ସେଣ୍ଟ୍ ଡେଭିଡ୍ ଦୁର୍ଗ ଅଧିକାର କରି ମାନ୍ଦ୍ରାଜ ଜିଣିବାକୁ ଗଲେ । କିନ୍ତୁ ସେ ପାରିଲେ ନାହିଁ । ଅଧିକନ୍ତୁ ଇଂରେଜମାନେ ଫରାସୀମାନଙ୍କୁ ଆଉ ଏକ ଯୁଦ୍ଧରେ ପରାସ୍ତ କରି ପଣ୍ଡିଚେରୀ ଦୁର୍ଗକୁ ଧ୍ୱଂସ କରିଦେଲେ । ଲାଲି ବନ୍ଦୀ ହୋଇ ଫ୍ରାନ୍ସକୁ ପଠାଗଲେ ଓ ସେଠାରେ ଦେଶ-

Digitized by srujanika@gmail.com

ଦ୍ରୋହୀ ବୋଲି ହଣା ଖାଇଲେ । କ୍ଲାଇବ ବଙ୍ଗଳାରେ ଫରାସୀ ଅଧିକୃତ ଚନ୍ଦନନଗର ଅଧିକାର କଲେ ।

୧୭୬୩ ଖ୍ରୀଷ୍ଟାବ୍ଦରେ ଇଉରୋପରେ ଯେତେବେଳେ ସେ ଦୁଇ ଜାତିର ସନ୍ଧି ହେଲା, ଭାରତରେ ଏଣେ ଯୁଦ୍ଧ ବନ୍ଦ ହେଲା । ସନ୍ଧିରେ ଫରାସୀମାନେ ପଣ୍ଡିଚେରୀ ଓ ଚନ୍ଦନନଗର ପୁଣି ଫେରିପାଇଲେ ।

ଏହିଠାରୁ ଫରାସୀମାନଙ୍କର ଏ ଦେଶରେ ରାଜ୍ୟପ୍ରତିଷ୍ଠା କରିବା ଆଶା ଏକାବେଳକେ ଲୋପ ହେଲା ।

---

# ବଙ୍ଗ, ବିହାର ଓ ଓଡ଼ିଶାର ଦେବାନୀ

କ୍ଲାଇବ ମିର୍ ଜାଫରଙ୍କୁ ବଙ୍ଗଳାର ନବାବ କରି ନିଜେ ତାଙ୍କ କାର୍ଯ୍ୟକଳାପ ଦେଖୁଥିଲେ । ଏହିପରି ତିନିବର୍ଷ କାର୍ଯ୍ୟ ଚାଲିଲା ପରେ ସେ ଛୁଟି ନେଇ ନିଜ ଦେଶ ଇଂଲଣ୍ଡକୁ ଫେରିଗଲେ । ମିର୍ ଜାଫର ଏହି ସମୟରେ ନିଜ ଇଚ୍ଛା ଅନୁସାରେ ଖର୍ଚ୍ଚ କରିବାରେ ଲାଗିଲେ । ତାଙ୍କ ବୃଦ୍ଧାମଣା ଦୋଷରୁ ଶାସନରେ ନାନା ବିଶୃଙ୍ଖଳା ଘଟିଲା । ତେଣୁ ଇଂରେଜମାନେ ତାଙ୍କୁ ନବାବ ପଦ ପାଇଁ ଅନୁପଯୁକ୍ତ ମନେକରି ତାଙ୍କ ଜ୍ୱାଇଁ ମିର୍ କାଶିମଙ୍କୁ ଆଣି ଗାଦିରେ ବସାଇଲେ । ଏଥିରେ ଇଂରେଜଙ୍କ ବିପଦ ଆହୁରି ବଢିଲା । ମିର୍ କାଶିମ ସେମାନଙ୍କ ଅଧୀନରେ ନ ରହି ସ୍ୱାଧୀନ ହେବାକୁ ଚେଷ୍ଟା କଲେ । ଦେଖୁ ଦେଖୁ ଇଂରେଜମାନଙ୍କର ସେ ଖୁବ୍ ବିରୋଧୀ ହୋଇଉଠିଲେ । ଅଳ୍ପଦିନ ମଧ୍ୟରେ ସେ ମୋଗଲ ସମ୍ରାଟ ସାହଆଲମ ଏବଂ ଅଯୋଧ୍ୟାର ନବାବ ସୁଜାଉଦ୍ଦୌଲାଙ୍କୁ ଯାଇ ଶରଣ ମାଗିଲେ । ସେମାନଙ୍କ ସାହାଯ୍ୟରେ ସେ ପାଟଣାଠାରେ ସମସ୍ତ ଇଂରେଜ ବଣିକଙ୍କୁ ବନ୍ଦୀ କରି ତାଙ୍କ କର୍ମଚାରୀମାନଙ୍କୁ ହୁକୁମ ଦେଲେ, ଯେଉଁଠି ଇଂରେଜ ଦେଖୁଛ, ମାର । ୧୭୬୩ ଖ୍ରୀଷ୍ଟାବ୍ଦରେ ଏହି ଘଟଣା ଘଟିଥିଲା । ପାଟଣାଠାରେ ମିର୍ କାଶିମ ଦୁଇ ହଜାର ଭାରତୀୟ ସିପାହୀ ଏବଂ ଦୁଇ ଶହ ଇଂରେଜଙ୍କୁ ହତ୍ୟା କରିଥିଲେ ।

Digitized by srujanika@gmail.com

ଏତିକରେ ଯୁଦ୍ଧ ସରିଲା ନାହିଁ । ବକ୍‌ସାର୍‌ଠାରେ ଇଂରେଜଙ୍କ ସହିତ ଯୁଦ୍ଧ ହେଲା । ଯୁଦ୍ଧରେ ଇଂରେଜମାନେ ଜୟ ଲାଭ କଲେ। ମିର୍‌ କାଶିମ ହାର ରାଜ୍ୟ ଛାଡ଼ି ଲୁଆଡେ ପଳାଇଲେ । ସାହ ଆଲମ ଇଂରେଜଙ୍କ ପାଖରେ ଆଶ୍ରୟ ମାଗି ରହିଲେ ।

ଭାରତରେ ଏ ଯୁଦ୍ଧ ଖବର ଶୁଣି ଇଷ୍ଟ ଇଣ୍ଡିଆ କମ୍ପାନୀ କ୍ଲାଇବଙ୍କୁ ପୁଣି ଭାରତକୁ ପଠାଇଲେ । ଏଥର କ୍ଲାଇବ ଭାରତରେ ଇଂରେଜ ଅଧିକୃତ ସ୍ଥାନମାନଙ୍କର ପ୍ରଥମ ଗଭର୍ଣ୍ଣର ବା ଶାସନକର୍ତ୍ତାରୂପେ ଆସିଲେ । ଆସିଲା-ମାତ୍ରେ ସେ ଦୁଇ ପକ୍ଷରେ ସନ୍ଧି କରାଇଲେ । ଅଯୋଧ୍ୟା ଛଡା ଏଲାହାବାଦ ଓ କୋରା ଅଞ୍ଚଳ ନବାବ ସୁଜାଉଦ୍ଦୌଲାଙ୍କ ଅଧୀନରେ ଥିଲା । ସେ ଅଯୋ-ଧ୍ୟାଲୁ ସୁଜାଙ୍କୁ ଫେରାଇଦେଇ ଏଲାହାବାଦ ଓ କୋରା ଅଞ୍ଚଳକୁ ସମ୍ରାଟ ସାହଆଲମଙ୍କୁ ଦେଲେ । ଉଭୟେ ଇଂରେଜଙ୍କର ମିତ୍ର ହୋଇ ରହିଲେ । ଯୁଦ୍ଧଖର୍ଚ୍ଚ ପାଇଁ ସୁଜା ଇଂରେଜମାନଙ୍କୁ ପଚାଶ ଲକ୍ଷ ଟଙ୍କା ଦେଲେ ଓ ସାହଆଲମ ଇଂରେଜଙ୍କ ଆଶ୍ରୟରେ ଏଲାହାବାଦଠାରେ ରହିଲେ ।

ଏହି ସନ୍ଧିଫଳରେ ଇଂରେଜମାନଙ୍କର ଆହୁରି ଏକ ବିଶେଷ ଲାଭ ହେଲା । ତାହା ହେଉଛି—ବଙ୍ଗ, ବିହାର ଓ ଓଡିଶାର ଦେବାନୀ । ସମ୍ରାଟ ସାହଆଲମ ୧୭୬୫ ଖ୍ରୀଷ୍ଟାବ୍ଦରେ ଇଷ୍ଟ ଇଣ୍ଡିଆ କମ୍ପାନୀକୁ ଏହି ଅଧିକାର ଦେଲେ । ଏହା ଫଳରେ ନବାବଙ୍କ କର୍ମଚାରୀ କେବଳ ମାଲିମକଦ୍ଦମା ବିଚାର କରିବାକୁ ରହିଲେ; ବାକୀ ସବୁ ସେନା ଓ ରାଜସ୍ୱ ବାବଦ ଇଂରେଜଙ୍କ ହାତରେ ରହିଲା । ଇଂରେଜମାନେ ରାଜସ୍ୱ ଆଦାୟ କରିବେ । ସେଥିରୁ ନବାବ ପାଇବେ ବାର୍ଷିକ ୫୩ ଲକ୍ଷ, ସମ୍ରାଟ ପାଇବେ ବାର୍ଷିକ ୨୬ ଲକ୍ଷ; ବାକୀ ଯାହା ବଳିବ, ତାହା କମ୍ପାନୀର ନିଜସ୍ୱ ହୋଇ ରହିବ । ସେଥିରେ ସମ୍ରାଟ୍‌ ବା ନବାବଙ୍କର କିଛି ସ୍ୱତ୍ୱ ରହିବ ନାହିଁ। ଏ କଥା ସ୍ଥିର ହେଲା ।

**କ୍ଲାଇବର ଅନ୍ତ**—

ଇଂରେଜମାନେ ବଙ୍ଗ, ବିହାର ଓ ଓଡିଶାର ଦେବାନୀ ପାଇ ସର୍ବେସର୍ବା ହେଲାବେଳକୁ ଦକ୍ଷିଣ-ଭାରତରେ ସେମାନଙ୍କର

Digitized by srujanika@gmail.com

ଆଉ ଏକ ଭୀଷଣ ଶତ୍ରୁ ଦେଖାଦେଲା, ତାଙ୍କ ନାଁ ହେଉଛି ହାଇଦର ଅଲି ।

ହାଇଦର ନିତାନ୍ତ ଦରିଦ୍ର ଘରର ପୁଅ । ସେ କିଛି ପାଠ ପଢ଼ି ନ ଥିଲେ; ମାତ୍ର ବୁଦ୍ଧି ଓ ସାହସରେ ଅଦ୍ୱିତୀୟ ଥିଲେ । ତାଙ୍କ ପିତା ମଧ୍ୟ ଜଣେ ବୀର ଥିଲେ । ହାଇଦର ପ୍ରଥମେ ଫରାସୀ ଫଉଜ ଭିତରେ ପଶି ଯୁଦ୍ଧବିଦ୍ୟା ଶିଖିଲେ । ତା ପରେ ଲୁଣ୍ଠନ ବୃତ୍ତି ଧରି ବହୁତ ଟଙ୍କା ପଇସା ଜମା କଲେ । ହାତରେ ଟଙ୍କା ପଇସା ହେବାରୁ ଦଳେ ମୂର୍ଖ ଲୋକଙ୍କୁ ନେଇ ଯୁଦ୍ଧବିଦ୍ୟା ଶିଖାଇଲେ ।

## ପ୍ରଥମ ମହୀସୁର ଯୁଦ୍ଧ—

ହାଇଦରଙ୍କ ବଳପରାକ୍ରମ କଥା ଶୁଣି ମହୀସୁରର ହିନ୍ଦୁରାଜା ତାଙ୍କୁ ନିଜ ସେନାଦଳରେ ଭର୍ତ୍ତି କଲେ । ଅଳ୍ପ କେତେ ଦିନ ପରେ ସେ ସେନାପତି ପଦ ପାଇ କୌଶଳରେ ରାଜାଙ୍କୁ ବନ୍ଦୀ କରି ନିଜେ ମହୀସୁରର ରାଜା ହୋଇ ବସିଲେ । ଏହା ପରେ ତାଙ୍କର ଇଚ୍ଛା ହେଲା, କିପରି ସେ ସମଗ୍ର ଦକ୍ଷିଣ-ଭାରତ ଜିଣିବେ । ଏହା ଦେଖି ପାଖ ଆଖ ରାଜାମାନଙ୍କର ଭୟ ହେଲା ।

ସେହି ସମୟରେ ଦାକ୍ଷିଣାତ୍ୟରେ ହାଇଦ୍ରାବାଦର ନିଜାମ, ମରହଟ୍ଟା ଓ ଇଂରେଜ—ଏହି ତିନୋଟି ପ୍ରଧାନ ରାଜଶକ୍ତି ଥିଲେ । ନିଜାମ ଓ ମରହଟ୍ଟା ଇଂରେଜଙ୍କ ସଙ୍ଗେ ମିଶି ହାଇଦରଙ୍କ ବିରୁଦ୍ଧରେ ଉଠିଲେ । ପ୍ରଥମେ ସମସ୍ତେ ମିଳି ମହୀସୁରର ରାଜଧାନୀ ବଙ୍ଗାଲୋରକୁ ଦଖଲ କରିନେଲେ । କିନ୍ତୁ ହାଇଦର ବଡ଼ ଚତୁର । ସେ ମରହଟ୍ଟାଙ୍କୁ କିଛି ଲାଞ୍ଚ ଦେଇ, ନିଜାମଙ୍କୁ କିଛି ରାଜ୍ୟ ଦେବାକୁ କହି, ଶତ୍ରୁଦଳକୁ ଫଟାଇଦେଲେ । ପ୍ରଥମେ ଇଂରେଜମାନଙ୍କର ଭୟ ହୋଇଗଲା । ମାତ୍ର ମାନ୍ଦ୍ରାଜର ଗଭର୍ଣ୍ଣର ତ୍ରିଚନାପଲ୍ଲି-ଠାରେ ହାଇଦରଙ୍କ ସଙ୍ଗେ ଯୁଦ୍ଧ କରି ତାଙ୍କୁ ହଟାଇଦେଲେ । ତେବେକେ ବି ହାଇଦର ଦବିଲେ ନାହିଁ । ସେ ପୁଣି ୧୭୬୯ ଖ୍ରୀଷ୍ଟାବ୍ଦରେ ମାନ୍ଦ୍ରାଜ ଆକ୍ରମଣ କଲେ । ଇଂରେଜମାନେ ତାଙ୍କ ବଳ ଓ ସାହସ ଦେଖି

Digitized by srujanika@gmail.com

ଶେଷକୁ ତାଙ୍କ ସହିତ ସନ୍ଧି କଲେ । କଥା ହେଲା, ଉଭୟ ପକ୍ଷ ପରସ୍ପରର ଯେଉଁ ଯେଉଁ ରାଜ୍ୟ ଜୟ କରିଥିଲେ, ତାହା ଫେରାଇ ଦେବେ ଏବଂ ଏକ ପକ୍ଷର ବିପଦରେ ଅନ୍ୟ ପକ୍ଷ ତାକୁ ସାହାଯ୍ୟ ଦେବେ ।



## ଭାରତରେ ଇଂରେଜ ରାଜତ୍ୱ

**ହେଷ୍ଟିଂସ—**

ହେଷ୍ଟିଂସ୍ ନିତାନ୍ତ ଦରିଦ୍ର ଘରେ ଜନ୍ମ ହୋଇଥିଲେ । ପିଲାଦିନେ ତାଙ୍କର ଅସାଧାରଣ ବୁଦ୍ଧିର ପରିଚୟ ମିଳିଥିଲା । ସ୍କୁଲରେ ପାଠ ପଢିଲାବେଳେ ସେ ସବୁବେଳେ କ୍ଲାସରେ ପ୍ରଥମ ସ୍ଥାନ ଅଧିକାର କରୁଥିଲେ । ସେ ଦରିଦ୍ର ହୋଇଥିବାରୁ ଶିକ୍ଷକ-ମାନେ ତାଙ୍କୁ ସାହାଯ୍ୟ ଦେଇ ପଢାଇବାକୁ ଇଚ୍ଛା କରିଥିଲେ; ମାତ୍ର ତାଙ୍କୁ ୧୬ ବର୍ଷ ହେବା ପରେ ତାଙ୍କ ଖୁଡୁଚା ତାଙ୍କୁ ଆଉ ପାଠ ପଢାଇଲେ ନାହିଁ । ସେ କହିଲେ—ହିସାବପତ୍ର ତ ଶିଖିଗଲଣି, ଏଣିକି କେଉଁଠି ଗୁମାସ୍ତାଗିରି କଲେ ନିଜ ପେଟ ପୋଷି ପାରିବ । ଏତିକିରେ ହେଷ୍ଟିଂସଙ୍କ ପଢା ଶେଷ ହେଲା ।



ଓଆରେନ୍ ହେଷ୍ଟିଂସ୍

ମତଲବ ପରେ ହେଷ୍ଟିଂସଙ୍କୁ ଖଣ୍ଡିଏ ଗୁମାସ୍ତା ଚାକିରି ମିଳିଲା । ସେ ସମୟରେ ଇଷ୍ଟ ଇଣ୍ଡିଆ କମ୍ପାନୀ ଅଧୀନରେ ଚାକିରି କରିବା ପାଇଁ ବିଲାତରୁ ଗୋରା ଲୋକେ ଆସୁଥିଲେ । ସେଥିପାଇଁ ହେଷ୍ଟିଂସ ଖଣ୍ଡେ ଦରଖାସ୍ତ ଦେଲେ । ତାଙ୍କ ଦରଖାସ୍ତ ମଞ୍ଜୁର ହେବାରୁ ଅତି ଅଳ୍ପ ବୟସରେ ସେ ଭାରତକୁ ଚାକିରି ପାଇଁ ଆସିଲେ ।

Digitized by srujanika@gmail.com

ହେଷ୍ଟିଙ୍ଗସ୍ ପ୍ରଥମେ ବଙ୍ଗ ଦେଶର ମୁର୍ଶିଦାବାଦ ପାଖରେ କାଶିମ ବଜାରରେ ରହି କମ୍ପାନୀର ଖରିଦ-ବିକ୍ରିର ହିସାବ ରଖି ସାତ ବର୍ଷ କାଳ କାଟିଲେ । ସେତେବେଳେ ସୁରାଜ ଉଦ୍ଦୌଲା ନବାବ ଥିଲେ । ତାଙ୍କ ସୈନ୍ୟଙ୍କ ଦ୍ୱାରା ସେ ଥରେ ବନ୍ଦୀ ହୋଇଥିଲେ । କିନ୍ତୁ କୌଶଳରେ ଖସିଯାଇ ଇଂରେ-ଜଙ୍କ ସହିତ ମିଶି ପଲାସୀଠାରେ ଯୁଦ୍ଧ କରିଥିଲେ । ସେ ଆଗରୁ ଯୁଦ୍ଧ ନ କରି ମଧ୍ୟ ଖୁବ୍ ସାହସରେ ଲଢିଥିବାରୁ କ୍ଲାଇବ ତାଙ୍କ ଉପରେ ସନ୍ତୁଷ୍ଟ ହୋଇ ନବାବ ମିର୍ ଜାଫରଙ୍କ ରାଜସଭାରେ ଇଂରେଜ-ରାଜପ୍ରତିନିଧିରୂପେ ତାଙ୍କୁ ରଖାଇଲେ । କ୍ରମେ କ୍ରମେ ସେ ଏହିପରି ତଳ ପାହ୍ୟାରୁ ଉପର ପାହ୍ୟାକୁ ଉଠିଲେ । ତା ପରେ ସେ କଲିକତା ମନ୍ତ୍ରିସଭାରେ ଜଣେ ସଭ୍ୟ ନିର୍ବାଚିତ ହେଲେ ।

କ୍ଲାଇବ ୧୭୬୭ ଖ୍ରୀଷ୍ଟାବ୍ଦରେ ଚିରକାଳ ପାଇଁ ଏ ଦେଶ ଛାଡ଼ି ବିଲାତ ଗଲେ । ସେଠାରେ ସେ କେତେକ କାରଣରୁ ଆତ୍ମହତ୍ୟା କରି ମଲେ । ତାଙ୍କ ପରେ ଏ ଦେଶର ଇଂରେଜ ଅଧିକୃତ ରାଜ୍ୟରେ ଏହି ଓଆରେନ୍ ହେଷ୍ଟିଙ୍ଗସ୍ ଶାସନକର୍ତ୍ତା ହୋଇ ରହିଲେ ।

ତୁମ୍ଭେମାନେ ଆଗରୁ ଜାଣିଛ, କ୍ଲାଇବଙ୍କ ଅମଳରେ ରାଜ୍ୟର ଶାସନ ଭାର ନବାବଙ୍କ ହାତରେ ଥିଲା ଏବଂ ରାଜସ୍ୱ ଆଦାୟ ଭାର କମ୍ପାନୀ ନିଜ ହାତରେ ନେଇଥିଲେ । ନବାବ ମନେକଲେ—'ଆମେ ତ ଆମର ବୃତ୍ତି ଟଙ୍କା ଅପେକ୍ଷା ପଇସାଟିଏ ଅଧିକା ପାଇବୁ ନାହିଁ, ପ୍ରଜାମାନେ ସୁଖଶାନ୍ତିରେ ଥାଆନ୍ତୁ ବା ନ ଥାଆନ୍ତୁ, ଆମର ଯାଏ ଆସେ କେତେ ?' କମ୍ପାନୀ ମନେକଲେ—'ଆମର କାମ ଖଜଣା ଆଦାୟ । ଲୋକଙ୍କ ଭଲମନ୍ଦ ଅବସ୍ଥା ଆମର ଦେଖିବା କାମ ନୁହେଁ ।' ଏହିପରି ଦୁଇଘର କୁଳୁଆଁ ଓପାସ ରହିଲା ପରି ଦୁଇ ରାଜାଙ୍କ ଶାସନରେ ରହି ବଙ୍ଗଳାର ଅବସ୍ଥା ଭୟଙ୍କର ହୋଇଉଠିଲା । ଦେଶରେ ଚୋରିଆଡେ ଯେପରି ଡକାଏତି ଚାଲିଲା । ୧୭୭୦ ଖ୍ରୀଷ୍ଟାବ୍ଦରେ ଭୟଙ୍କର ଦୁର୍ଭିକ୍ଷ ହେଲା । ବଙ୍ଗଳାର ପ୍ରାୟ ତିନି ଭାଗରୁ ଏକ ଭାଗ ଲୋକ ଏଥିରେ ମରିଗଲେ । ନବାବ କି କମ୍ପାନୀ କେହି ହେଲେ ପ୍ରଜାଙ୍କୁ ଅନ୍ନକଷ୍ଟରୁ ରକ୍ଷା କରିବାକୁ ବାହାରିଲେ ନାହିଁ ।

Digitized by srujanika@gmail.com

ଏହାପରେ ବାପୁଦା ବେଳେ ଶାସନ ଭାର ମୁଣ୍ଡାଇବାକୁ ଜଣେ ଉପଯୁକ୍ତ ଲୋକ ଖୋଜା ହେଲା । ହେଷ୍ଟିଙ୍ଗସ୍ ଭାରତରେ ଅନେକ ଦିନ ରହି ଭାରତ-ବିଷୟରେ ଅନେକ କଥା ଜାଣିଥିଲେ । ତାଙ୍କୁ ଉପଯୁକ୍ତ ମନେ କରି କମ୍ପାନୀ ତାଙ୍କୁ ଗଭର୍ଣ୍ଣର ପଦ ଦେଲେ ।

ହେଷ୍ଟିଙ୍ଗସ୍ ଶାସନ ଭାର ଗ୍ରହଣ କରି ପ୍ରଥମେ ଦେଖିଲେ ଯେ, ରାଜ୍ୟ ଶାସନରେ କୌଣସି ନିୟମ ନାହିଁ । କମ୍ପାନୀଙ୍କ ଅଧୀନ ଶାସନକର୍ତ୍ତାମାନେ ନିଜ ନିଜ ଇଚ୍ଛା ଅନୁସାରେ ଶାସନକାର୍ଯ୍ୟ ଚଳାଉଛନ୍ତି । ବିଚାରପତିମାନେ ଲାଞ୍ଚ ନେଉଛନ୍ତି । ଖଜଣା ଅପେକ୍ଷା ବେଶୀ ଅର୍ଥ ପ୍ରଜାଙ୍କଠାରୁ ଆଦାୟ ହେଉଛି । ସୈନ୍ୟମାନଙ୍କୁ ଠିକ୍ ସମୟରେ ଦରମା ମିଳୁ ନାହିଁ । ଦିନକୁ ଦିନ ବ୍ୟୟ ବଢୁଛି, ଆୟ କମୁଛି; ଅଥଚ କମ୍ପାନୀର ସାହେବ କର୍ମଚାରୀମାନେ ଲକ୍ଷପତି, କୋଟିପତି ହୋଇ ବିଲାତ ଫେରିଯାଉଛନ୍ତି । ଏଥିର ପରିବର୍ତ୍ତନ ପାଇଁ ଇଂଲଣ୍ଡର ଡିରେକ୍ଟରମାନେ ହେଷ୍ଟିଙ୍ଗସ୍‌ଙ୍କୁ ଆଦେଶ ଦେଲେ ।

ଶାସନ ସୁବିଧା ପାଇଁ ହେଷ୍ଟିଙ୍ଗସ୍ ପ୍ରଥମେ ନବାବଙ୍କ ହାତରୁ ଶାସନ କ୍ଷମତା କାଢିନେଲେ । ପ୍ରତ୍ୟେକ ଜିଲ୍ଲାରେ ଜଣେ ଜଣେ ଗୋରା କଲେକ୍ଟର ରହିଲେ । ସେମାନଙ୍କ ଉପରେ ବିଚାରର ଭାର ରହିଲା । ବିଚାରରେ ସେମାନଙ୍କୁ ସାହାଯ୍ୟ ଦେବା ପାଇଁ ହିନ୍ଦୁ ଓ ମୁସଲମାନ ପଣ୍ଡିତ ନିଯୁକ୍ତ କରାଗଲେ । ପୁରୁଣା ଆଇନ ଉଠାଇ ଦିଆଗଲା । ନୂଆ ନୂଆ ଆଇନ ତିଆରି ହେଲା । ଖଜଣାର ପରିମାଣ ନିର୍ଦ୍ଦିଷ୍ଟ କରି ଦିଆଗଲା । ଜିଲ୍ଲାର କଲେକ୍ଟରଙ୍କ ଅଧୀନରେ ସବୁ ଜିଲ୍ଲାରେ ଗୋଟିଏ ଗୋଟିଏ ଫୌଜଦାରି ଓ ଦେୱାନୀ ଅଦାଲତ ସ୍ଥାପନା କରାହେଲା । ଅପିଲ କରିବା ପାଇଁ କଲିକତାରେ ଅପିଲ-ଅଦାଲତ ରହିଲା ।

ଆଗରୁ ଶାସନରେ କିଛି ଶୃଙ୍ଖଳା ନ ଥିବାରୁ ଟଙ୍କା ପଇସା ଠିକ୍‌ମତେ ଆଦାୟ ହେଉ ନ ଥିଲା । ଯୁଦ୍ଧରେ ଅନେକ ଟଙ୍କା ଖରଚ ହୋଇଯାଇଥିଲା । ରାଜକୋଷ ଶୂନ୍ୟ ପଡିଥିଲା । ହେଷ୍ଟିଙ୍ଗସ୍ ରାଜକୋଷ ପୂର୍ଣ୍ଣ କରିବାକୁ ନାନା ଉପାୟ ଖୋଜି ବସିଲେ । ଏତିକିବେଳକୁ ମୋଗଲ ସମ୍ରାଟ ସାହାଆଲମ ଇଂରେଜଙ୍କ ଆଶ୍ରୟ ଛାଡି ମରହଟ୍ଟାଙ୍କ କୋଳରେ ପଡି ଦିଲ୍ଲୀ

Digitized by srujanika@gmail.com

ପଠାଇଲେ । ତାଙ୍କର ଆଶା ହେଲା ଯେ, ସେ ଆକବର ଆଉରଙ୍ଗଜେବଙ୍କ ପରି ସମ୍ରାଟ ହୋଇପାରିବେ । ମାତ୍ର ସେ ଯାଇ ଭୁଲରେ ପଡ଼ିଲେ । ତାଙ୍କର ଏହି ଦୋଷ ଯୋଗୁଁ ତାଙ୍କୁ ଦିଆଯାଉଥିବା ବାର୍ଷିକ ବୃତ୍ତି ୨୬ ଲକ୍ଷ ଟଙ୍କା ହେଷ୍ଟିଂସ୍ କାଟିଦେଲେ । ଏହା ଛଡ଼ା ଗଙ୍ଗା ଓ ଯମୁନା ମଧ୍ୟରେ ଥିବା ଯେଉଁ ଏଲାହାବାଦ ଓ କୋରା ରାଜ୍ୟ କ୍ଲାଇବ ସମ୍ରାଟଙ୍କୁ ଦେଇଥିଲେ, ତାଙ୍କଠାରୁ ତାହା ଛଡ଼ାଇ ଆଣି ଅଯୋଧ୍ୟାର ନବାବ ସୁଜାଉଦ୍ଦୌଲାଙ୍କୁ ପଚାଶ ଲକ୍ଷ ଟଙ୍କାରେ ବିକ୍ରି-ଦେଲେ ।

## ରୋହିଲା ଯୁଦ୍ଧ—

ଅଯୋଧ୍ୟାର ପଶ୍ଚିମକୁ ରୋହିଲାଖଣ୍ଡ ବୋଲି ଖଣ୍ଡିଏ ଛୋଟିଆ ରାଜ୍ୟ ଅଛି । ସେଠାରେ ରୋହିଲା ବୋଲି ଏକ ଶ୍ରେଣୀର ଲୋକ ବାସ କରନ୍ତି । ସେମାନେ ଆଫଗାନିସ୍ଥାନର ଲୋକ । ଅଯୋଧ୍ୟାର ନବାବ ଅନେକ ଦିନରୁ ରୋହିଲାଖଣ୍ଡକୁ ନିଜ ରାଜ୍ୟରେ ମିଶାଇବାକୁ ଇଚ୍ଛା କରୁଥିଲେ । ରୋହିଲାମାନେ ହିନ୍ଦୁ ପ୍ରଜାଙ୍କ ଉପରେ ଅତ୍ୟାଚାର କରୁଥିଲେ ଏବଂ ନବାବଙ୍କୁ ପଦେ ପଦେ ବାଧା ଦେଉଥିଲେ । ଏହିପରି ସମୟରେ ମରହଟ୍ଟାମାନେ ରୋହିଲାଖଣ୍ଡ ଆକ୍ରମଣ କରିବାକୁ ଆସିବାରୁ ରୋହିଲା ସରଦାର ଅଯୋଧ୍ୟା ନବାବଙ୍କୁ ୪୦ ଲକ୍ଷ ଟଙ୍କା ଦେବାକୁ କହି ସାହାଯ୍ୟ ମାଗିଲେ । କେତେକ କାରଣରୁ ମରହଟ୍ଟାମାନେ ସେ ରାଜ୍ୟ ଆକ୍ରମଣ କଲେ ନାହିଁ । ତେଣୁ ରୋହିଲାମାନେ ନବାବଙ୍କୁ ଟଙ୍କା ଦେଲେ ନାହିଁ । ଏହି କାରଣରୁ ନବାବ ଓ ରୋହିଲାଙ୍କ ଭିତରେ କଳି ଆରମ୍ଭ ହେଲା । ନବାବ ଇଂରେଜଙ୍କ ସାହାଯ୍ୟ ମାଗି ରୋହିଲା-ମାନଙ୍କୁ ପରାସ୍ତ କଲେ । ରୋହିଲାଖଣ୍ଡ ମରୁଭୂମି ପରି ଛାରଖାର ହୋଇ ନବାବଙ୍କ ରାଜ୍ୟରେ ମିଶିଲା । ଇଂରେଜମାନେ ନବାବଙ୍କ ଠାରୁ ୪୦ ଲକ୍ଷ ଟଙ୍କା ପାଇଲେ ।

## ରେଗୁଲେଟିଙ୍ଗ୍ ଆକ୍ଟ—

କମ୍ପାନି କ୍ରମେ ଭାରତରେ ରାଜ୍ୟଲାଭ କରୁଛନ୍ତି ଦେଖି ଇଂଲଣ୍ଡର ରାଜା ଓ ପାର୍ଲିମେଣ୍ଟ ସେହି ଅଧିକୃତ ରାଜ୍ୟର ଶାସନ ଭାର ନିଜ ହାତକୁ ନେବାକୁ ଇଚ୍ଛା କଲେ । କାରଣ ସେମାନେ ବୁଝିପାରିଲେ ଯେ, ବଣିକ

Digitized by srujanika@gmail.com

ବେପାରିମାନେ ରାଜ୍ୟ ଜିଣିଲେ କଣ ହେଲା, ନିଜ ନିଜର ଉପରିଆ ଲାଭ ପାଇଁ କେବଳ ଧାଇଁବେ; ପ୍ରଜାଙ୍କ ମଙ୍ଗଳ ପ୍ରତି ଦୃଷ୍ଟି ଦେବେ ନାହିଁ । ସେହି ହେତୁରୁ ୧୭୭୩ ଖ୍ରୀଷ୍ଟାବ୍ଦରେ ଭାରତ ଶାସନ ପାଇଁ ରେଗୁଲେଟିଙ୍ଗ୍ ଆକ୍ଟ ନାମରେ ଏକ ଆଇନ ଜାରି ହେଲା । ତାହାର ଫଳରେ ବଙ୍ଗଳାର ଗଭର୍ଣ୍ଣର ଭାରତରେ ସମସ୍ତ ଇଂରେଜ ଅଧିକୃତ ରାଜ୍ୟର ଗଭର୍ଣ୍ଣର ଜେନେରଲ ନିଯୁକ୍ତ ହେଲେ । କମ୍ପାନୀ ବଦଳରେ ବିଲାତର ପ୍ରଧାନ ମନ୍ତ୍ରୀ ଏହି ନିଯୁକ୍ତ କଲେ । କଲିକତାରେ ଏକ ସୁପ୍ରିମ କୋର୍ଟ ବା ପ୍ରଧାନ ବିଚାରାଳୟ ବସିଲା । ଏଥିପାଇଁ ଇଂଲଣ୍ଡରୁ ବିଚାରପତିମାନେ ଆସିଲେ । ଗଭର୍ଣ୍ଣର ଜେନେରଲଙ୍କୁ ସାହାଯ୍ୟ କରିବା ପାଇଁ ଚାରି ଜଣ ମନ୍ତ୍ରୀ ରହିଲେ । ବିଲାତ ସରକାର ସେମାନଙ୍କୁ ବାଛିଲେ । ବଙ୍ଗଳା, ବମ୍ବେ ଓ ମାନ୍ଦ୍ରାଜ ଏହି ତିନି ପ୍ରଦେଶର ଶାସନକର୍ତ୍ତାମାନଙ୍କ ମଧ୍ୟରେ ଗଭର୍ଣ୍ଣର ଜେନେରଲ ସର୍ବପ୍ରଧାନ ବୋଲି ଗଣ୍ୟ ହେଲେ ।

ଏହି ଆଇନ ଅନୁସାରେ ହେଷ୍ଟିଙ୍ଗସ୍ ଭାରତର ପ୍ରଥମ ଗଭର୍ଣ୍ଣର ଜେନେରଲ ହେଲେ । ତାଙ୍କ ଦରମା ବର୍ଷକୁ ଅଢେଇ ଲକ୍ଷ ଟଙ୍କା ସ୍ଥିର କରାଗଲା ।

## ଚୈତ ସିଂ ଓ ଅଯୋଧ୍ୟାର ନବାବ—

ଚୈତ ସିଂ ବାରାଣସୀ ବା କାଶୀର ରାଜା । ସେ ଇଂରେଜମାନଙ୍କ ଅଧୀନରେ ରହି ବାର୍ଷିକ କର ଦେଉଥିଲେ । ତାଙ୍କ ସଙ୍ଗେ ଚୁକ୍ତି ଥିଲା ଯେ, ସେ ନିର୍ଦ୍ଦିଷ୍ଟ ଟଙ୍କାଠାରୁ ବେଶୀ ଦେବେ ନାହିଁ । କମ୍ପାନିର ଟଙ୍କା ନିଅଣ୍ଟ ପଡିବାରୁ ହେଷ୍ଟିଙ୍ଗସ୍ ତାଙ୍କଠାରୁ ବେଶୀ କର ଦାବୀ କଲେ । ସେ ତାହା ମଧ୍ୟ ଦୁଇ ବର୍ଷ ଦେଲେ । ତୃତୀୟ ଥର ସେ ଦେବାରେ ଟିକିଏ ଡେରି କରିବାରୁ ହେଷ୍ଟିଙ୍ଗସ୍ ତାଙ୍କୁ ରାଜ୍ୟରୁ ତଡି ଦେଇ ତାଙ୍କ ପୁତୁରାଙ୍କୁ ରାଜା କରାଇଲେ ।

ଅଯୋଧ୍ୟାର ନବାବ ରୋହିଲା ଯୁଦ୍ଧ ପାଇଁ ଇଂରେଜଙ୍କୁ ଟଙ୍କା ଦେବାକୁ କହିଥିଲେ । କିନ୍ତୁ ସେ ଟଙ୍କା ଦେବା ପୂର୍ବରୁ ମରିଗଲେ । ହେଷ୍ଟିଙ୍ଗସ୍ ନବାବଙ୍କ ବେଗମ୍ମାନଙ୍କୁ ଟଙ୍କା ମାଗିଲେ । ଏ କଥା ମନ୍ତ୍ରିସଭାରେ ପଡିଲା । ବେଗମ-ମାନେ ଟଙ୍କା ପାଇଁ ଦାୟୀ ନୁହନ୍ତି ବୋଲି ସଭା ମତ ଦେଲେ । ତଥାପି ବେଗମ୍ମାନେ ଇଂରେଜଙ୍କ ବିରୁଦ୍ଧରେ ଚୈତ ସିଂଙ୍କୁ ସାହାଯ୍ୟ ଦେଇଛନ୍ତି

Digitized by srujanika@gmail.com

ବୋଲି କହି ହେଷ୍ଟିଂଗସ୍ ସେମାନଙ୍କୁ ଜୋରିମାନା କଲେ । ବେଗମ୍‌ମାନଙ୍କୁ ନାନା ଯନ୍ତ୍ରଣା ଦେଇ ଏକ କୋଟି ଟଙ୍କା ଆଦାୟ କରାଗଲା ।

ଏହିସବୁ କାର୍ଯ୍ୟ ଚାଲୁଥିଲା ବେଳେ ହେଷ୍ଟିଂଗସ୍ ଓ ମନ୍ତ୍ରସଭାର ତିନି ଜଣ ମେମ୍ବରଙ୍କ ମଧ୍ୟରେ ଆଦୌ ପଡୁ ନ ଥିଲା । ମେମ୍ବରମାନେ ପ୍ରତି କଥାରେ ହେଷ୍ଟିଂଗସ୍‌ଙ୍କର ବିରୁଦ୍ଧରେ ଚାଲୁଥିଲେ । ଏଥିପାଇଁ ହେଷ୍ଟିଂଗସ୍‌ଙ୍କୁ କପରି ଘୋର ଦୁର୍ଦ୍ଦଶା ଭୋଗିବାକୁ ପଡିଲା, ପରେ ତୁମ୍ଭେମାନେ ଜାଣିବ ।

ହେଷ୍ଟିଂଗସଙ୍କ ରାଜୁତିରେ ଇଂରେଜମାନଙ୍କୁ ଦୁଇ ଥର ଯୁଦ୍ଧ କରିବାକୁ ପଡିଥିଲା—ଥରେ ମରହଟ୍ଟାଙ୍କ ସଙ୍ଗେ ଓ ଆଉ ଥରେ ହାଇଦର ଆଲିଙ୍କ ସଙ୍ଗେ ।

## ପ୍ରଥମ ମହୀସୁର ଯୁଦ୍ଧ—

ପେଶବା ମଧୁ ରାଓ ମରିଯିବାରୁ ତାଙ୍କ ଭାଇ ନାରାୟଣ ରାଓ ପେଶବା ହେଲେ । କିନ୍ତୁ ସେ କିଛି ଦିନ ପରେ ମରିଗଲେ । ତାଙ୍କ ସ୍ତ୍ରୀ ସେତେବେଳକୁ ଗର୍ଭବତୀ । ତାଙ୍କ କକା ରାଘବ ପେଶବା ହେବାକୁ ଚେଷ୍ଟା କଲେ । ନାରାୟଣଙ୍କର ଗୋଟିଏ ପୁଅ ହେବାରୁ ମରହଟ୍ଟାମାନେ ଦୁଇ ଦଳ ହୋଇଗଲେ । ଦଳେ ରାଘବଙ୍କୁ ମାନିଲେ; ଆଉ ଦଳେ ଶିଶୁ ମଧୁରାଓ ନାରାୟଣଙ୍କୁ ପେଶବା ବୋଲି କହିଲେ । ରାଘବ ଇଂରେଜଙ୍କ ସାହାଯ୍ୟ ଲୋଡି ତାଙ୍କୁ କେତେ ଖଣ୍ଡି ରାଜ୍ୟ ଯାଚିଲେ । ଏହି ସମ୍ପର୍କରେ ପାଞ୍ଚ ବର୍ଷକାଳ ଯୁଦ୍ଧ ହେଲା । ଶେଷରେ ସନ୍ଧି ହେବାରୁ ରାଘବ ପେଶବା ହୋଇପାରିଲେ ନାହିଁ । ସେ କେବଳ ବୃତ୍ତି ପାଇ ରହିଲେ । ଇଂରେଜମାନେ ବମ୍ବେ ନିକଟରେ ଥିବା ସାଲସେଟ୍, ବେସିନ୍ ଓ ଏଲଫାଣ୍ଟା ନାମକ ତିନୋଟି ଦ୍ୱୀପ ପାଇଲେ ।

## ଦ୍ୱିତୀୟ ମହୀସୁର ଯୁଦ୍ଧ—

ମରହଟ୍ଟା ଯୁଦ୍ଧର ଠିକ୍ ପରେ ହାଇଦରଙ୍କର ଇଂରେଜଙ୍କ ସଙ୍ଗେ ପୁଣି କଳି ଲାଗିଲା । ହାଇଦର ମରହଟ୍ଟାଙ୍କ ସଙ୍ଗେ ଲଢେଇ କରି ହାରିଗଲେ । ଆଗରୁ ତାଙ୍କର ଇଂରେଜଙ୍କ ସଙ୍ଗେ ଯେଉଁ ସନ୍ଧି ହୋଇଥିଲା, ସେଥିରେ ଥିଲା ଯେ, ଅସମୟରେ ଏକ ଅନ୍ୟକୁ ସାହାଯ୍ୟ ଦେବେ । ଇଂରେଜମାନେ ତାଙ୍କୁ ଯୁଦ୍ଧରେ ସାହାଯ୍ୟ ନ ଦେବାରୁ ସେ ରାଗି ଗୋଳମାଳ କଲେ । ସେ ପ୍ରଥମେ ମାନ୍ଦ୍ରାଜ ଆଖପାଖ ଇଂରେଜଙ୍କ ଅଧୀନ ଗାଁସବୁ ପୋଡିବାରେ

Digitized by srujanika@gmail.com

ଲାଗିଲେ । ଯୁଦ୍ଧ ଆରମ୍ଭ ହେଲା । ହାଇଦର ଅଶୀ ବର୍ଷର ବୁଢା ହୋଇ ମଧ୍ୟ ଭେଣ୍ଡା ପରି ଯୁଦ୍ଧ କରି କରି ଶେଷରେ ମଲେ । ତାଙ୍କ ପୁଅ ଟିପୁ ଫରାସୀମାନଙ୍କ ସାହାଯ୍ୟ ନେଇ ଯୁଦ୍ଧ ଚଳାଇଲେ । ପରେ ସନ୍ଧି ହେବାରୁ ସିଏ ଯାହା ରାଜ୍ୟ ନେଇଥିଲେ, ଫେରାଇଦେଲେ ।

## ହେଷ୍ଟିଙ୍ଗସ୍‌ଙ୍କ ବିଗୃର—

ହେଷ୍ଟିଙ୍ଗସ ଏ ଦେଶରେ ଭଲ ଶାସନ କରୁ ନାହାନ୍ତି, ନାନା ଅତ୍ୟା-ଚାର କରୁଛନ୍ତି ବୋଲି ବିଲାତରେ ପ୍ରଚାର ହେଲା । ତେଣୁ ସେ ଏଠାରୁ ଇସ୍ତଫା ଦେଇ ବିଲାତ ଫେରିଗଲେ । ତାଙ୍କପରି ଯେଉଁ ଅଭିଯୋଗ ହୋଇଥିଲା, ତହିଁର ବିଚାର ହେଲା । ବର୍କ ନାମରେ ଜଣେ ପଣ୍ଡିତ ତାଙ୍କ ବିରୁଦ୍ଧରେ ଅନେକ କଥା ଲର୍ଡସଭାରେ ପକାଇଲେ । ସାତ ବର୍ଷକାଳ ବିଚାର ଚାଲିଲା । ହେଷ୍ଟିଙ୍ଗସ ଭାରତରୁ ପାଇଥିବା ସମୁଦାୟ ସମ୍ପତ୍ତି ଏହି ମକଦ୍ଦମାରେ ଖର୍ଚ୍ଚ କରି ବଡ଼ ଗରିବ ହୋଇଗଲେ; କିନ୍ତୁ ଶେଷରେ ଖଲାସ ପାଇଲେ ।

## ଲର୍ଡ କର୍ଣ୍ଣୱାଲିସ୍—

ୱାରେନ ହେଷ୍ଟିଙ୍ଗସ୍‌ଙ୍କ ପରେ ୧୭୮୬ ଖ୍ରୀଷ୍ଟାବ୍ଦରେ ଲର୍ଡ କର୍ଣ୍ଣୱାଲିସ ଦ୍ୱିତୀୟ ଗଭର୍ଣ୍ଣର ଜେନେରଲ ହୋଇ ଆସିଲେ । ଏ ଜଣେ ବିଚକ୍ଷଣ ସୈନିକ ପୁରୁଷ ଥିଲେ । ଏହାଙ୍କ ଶାସନ କାଳରେ ବଙ୍ଗ ଦେଶରେ ଚିରସ୍ଥାୟୀ ବନ୍ଦୋବସ୍ତ ଓ ଶାସନ ବିଷୟରେ କେତେ ପ୍ରକାର ନୂଆ ନୂଆ ନିୟମ ଜାରି ହୋଇଥିଲା । ଏହି ଚିରସ୍ଥାୟୀ ବନ୍ଦୋବସ୍ତ ଫଳରେ ଏଣିକି କମ୍ପାନୀ ସୁବିଧାରେ ରାଜସ୍ୱ ଆଦାୟ କରି-ପାରିଲେ । ଏହାଙ୍କ ଅମଳରେ ତୃତୀୟ ମହୀସୁର ସମର ହୋଇଥିଲା ।


ଲର୍ଡ କର୍ଣ୍ଣୱାଲିସ

Digitized by srujanika@gmail.com

## ଟିପୁ ସୁଲତାନ—

ହାଇଦରଙ୍କ ପୁଅ ଟିପୁ ଇଂରେଜଙ୍କର ପ୍ରଧାନ ଶତ୍ରୁ ହୋଇଉଠିଲେ । ସେ ଜଣେ ଭଲ ଯୋଦ୍ଧା ଥିଲେ ଏବଂ ବେଶ୍ ଲେଖାପଢା ଜାଣିଥିଲେ । ସେ ହିନ୍ଦୁଙ୍କ ଉପରେ ନାନାପ୍ରକାର ଅତ୍ୟାଚାର କରି ଜୋର ଜବରଦସ୍ତି ଭାବରେ ମୁସଲମାନ କରାଉଥିବାରୁ ହିନ୍ଦୁମାନେ ତାଙ୍କ ବିରୁଦ୍ଧରେ ଉଠିଲେ ।



ଟିପୁ ସୁଲତାନ

## ତୃତୀୟ ମହୀସୁର ଯୁଦ୍ଧ—

ଟିପୁ ପ୍ରଥମେ ଇଂରେଜମାନଙ୍କ ମିତ୍ରରାଜ୍ୟ ତ୍ରିବାଙ୍କୁର ଆକ୍ରମଣ କଲେ । ତେଣୁ ଇଂରେଜ ଓ ଟିପୁଙ୍କ ଭିତରେ ଯୁଦ୍ଧ ହେଲା । ଏ ଯୁଦ୍ଧରେ ଟିପୁ ପରାସ୍ତ ହେଲେ ଏବଂ ବାଧ୍ୟ ହୋଇ ସନ୍ଧି କଲେ । ସନ୍ଧି ସର୍ତ୍ତ ଅନୁଯାୟୀ ଟିପୁଙ୍କୁ ୩ କୋଟି ଟଙ୍କା କ୍ଷତିପୂରଣ ଦେବାକୁ ପଡିଲା ଏବଂ ନିଜ ରାଜ୍ୟର ଅଧେ ମଧ୍ୟ ଛାଡିଦେବାକୁ ହେଲା । ସେତକ ଇଂରେଜ, ନିଜାମ ଓ ମରହଟ୍ଟାମାନେ ଭାଗ କରି ବାଣ୍ଟି ନେଲେ । ଏହି ଯୁଦ୍ଧ ୧୭୯୦ରୁ ୧୭୯୨ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ହୋଇଥିଲା ।

## ଚତୁର୍ଥ ମହୀସୁର ଯୁଦ୍ଧ—

କିଛିଦିନ ପରେ ଇଉରୋପରେ ଇଂରେଜ ଓ ଫରାସୀମାନଙ୍କ ମଧ୍ୟରେ ପୁଣି ଯୁଦ୍ଧ ହେଲା । ଟିପୁ ଫରାସୀମାନଙ୍କ ସହିତ ଷଡଯନ୍ତ୍ର କରି ଇଂରେଜମାନଙ୍କର ଅନିଷ୍ଟ ପାଞ୍ଚିଲେ । ଏ କଥା ଇଂରେଜମାନେ ଜାଣିପାରି ତାଙ୍କ ସଙ୍ଗେ ଯୁଦ୍ଧ କଲେ । ମହୀସୁର ରାଜଧାନୀ ଶ୍ରୀରଙ୍ଗପଟ୍ଟନ ଇଂରେଜମାନେ ଅଧିକାର କରି ବସିଲେ । ଏହି ଯୁଦ୍ଧରେ ଟିପୁ ସୁଲତାନଙ୍କର ମୃତ୍ୟୁ ହେଲା । ଏହା ପରେ ତାଙ୍କ ରାଜ୍ୟର କେତେକ ଅଞ୍ଚଳ ଇଂରେଜମାନେ ନିଜ

Digitized by srujanika@gmail.com

ରାଜ୍ୟରେ ମିଶାଇଦେଲେ ଓ ପୂର୍ବ ହିନ୍ଦୁରାଜାଙ୍କର ଜଣେ ବଂଶଧରଙ୍କୁ ବାକୀ ରାଜ୍ୟଚକ୍ରରେ ରାଜା କରାଇଦେଲେ । ଏହି ସମୟକୁ ମାର୍କୁଇସ୍ ଅଫ୍ ଓ୍ୱେଲେସ୍ଲି ଭାରତର ଗଭର୍ଣ୍ଣର ଜେନେରାଲ୍ । ସେ ନିଜେ ଟିପୁଙ୍କ ବିରୁଦ୍ଧରେ ଯୁଦ୍ଧ କରିଥିଲେ । ଏହି ଯୁଦ୍ଧ ୧୭୯୮ ଠାରୁ ୧୭୯୯ ପର୍ଯ୍ୟନ୍ତ ଚାଲିଥିଲା ।

## ମାର୍କୁଇସ୍ ଅଫ ଓ୍ୱେଲେସ୍ଲି—

### ପରସ୍ପର ସାହାଯ୍ୟକୃତ ସନ୍ଧି—

ଏ ଗଭର୍ଣ୍ଣର ଜେନେରାଲ୍ ହୋଇ ଭାରତକୁ ଆସିଲା ପରେ ଦେଶୀୟ ରାଜାମାନଙ୍କ ସହିତ ଏକ ସନ୍ଧି କଲେ । ସେମାନଙ୍କୁ କହିଲେ, ତୁମେ ସବୁ କମ୍ପାନୀର ଅଧୀନରେ ରହ । କମ୍ପାନୀ ତୁମକୁ ଶତ୍ରୁ ଆକ୍ରମଣରୁ ରକ୍ଷା କରିବ । ତୁମେମାନେ କମ୍ପାନୀର ବିନାନୁମତିରେ ଆପଣା ଆପଣା ଭିତରେ ଯୁଦ୍ଧ କରିପାରିବ ନାହିଁ କିମ୍ବା କୌଣସି ଇଉରୋପୀୟ କର୍ମଚାରୀ ମନଇଚ୍ଛା ରଖିପାରିବ ନାହିଁ । ନିଜ ରାଜ୍ୟକୁ ନିଷ୍କଣ୍ଟକ ଭାବରେ ରଖିବା ପାଇଁ ନିଜ ନିଜ ଖର୍ଚ୍ଚରେ ଦଳେ ଦଳେ ଇଂରେଜ ସୈନ୍ୟ ରଖିବାକୁ ହେବ । ଏହି ସନ୍ଧି ପ୍ରସ୍ତାବରେ ଅଯୋଧ୍ୟାର ନବାବ ଓ ନିଜାମ ରାଜି ହେଲେ । ପେଶବା ବାଜିରାଓ ଇଂରେଜଙ୍କର ଶରଣ ପଶିଲେ । ଏହି ସନ୍ଧିକୁ ପରସ୍ପର ସାହାଯ୍ୟକୃତ ସନ୍ଧି କହନ୍ତି । ଏହାଦ୍ୱାରା ଦେଶୀୟ ରାଜାଙ୍କ ବଳ କମି ଆସିଲା ଓ ଇଂରେଜମାନେ ଦେଶୀୟ ରାଜାଙ୍କ ସାହାଯ୍ୟ ପାଇ ପ୍ରବଳ ହୋଇ-ଉଠିଲେ ।

## ଦ୍ୱିତୀୟ ମରହଟ୍ଟା ସମର—

ବାଜିରାଓ ଇଂରେଜଙ୍କ ପାଖରେ ଶରଣ ପଶିବାରୁ ଅନ୍ୟାନ୍ୟ ମରହଟ୍ଟା ରାଜାମାନେ ତାଙ୍କ ଉପରେ ବିରକ୍ତ ହେଲେ । ସିନ୍ଧିଆ ଓ ନାଗପୁରର ମରହଟ୍ଟା-ମାନେ ଇଂରେଜଙ୍କ ବିରୁଦ୍ଧରେ ଯୁଦ୍ଧ କରି ହାରିଗଲେ । ଏହି ଯୁଦ୍ଧଫଳରେ ଇଂରେଜମାନେ ଦିଲ୍ଲୀ, ଆଗ୍ରା, ବୁନ୍ଦେଲଖଣ୍ଡ ଓ ଓଡିଶା ରାଜ୍ୟ ପାଇଲେ । ୧୮୦୩ରେ ଓଡିଶା ଇଂରେଜଙ୍କ ହାତକୁ ଗଲା ।

Digitized by srujanika@gmail.com

## ରଣଜିତ୍ ସିଂହ—

ବାବା ନାନକ ଯେଉଁ ଧର୍ମ ପ୍ରଚାର କରିଥିଲେ, ତାହାର ଫଳରେ ପଞ୍ଜାବରେ ଏକ ଧର୍ମପରାୟଣ ଜାତି ଗଢ଼ି ଉଠିଲେ । ସେମାନେ ଶିଖ୍ ନାମରେ ପରିଚିତ ହେଲେ । ଶିଖ୍‌ମାନେ ଗୁରୁମାନଙ୍କ ଅଧୀନରେ ରହି ନିରୀହ ଭାବରେ ନିଜ ଧର୍ମ ପାଳି ଚଳୁଥିଲେ । କିନ୍ତୁ ପରେ ମୋଗଲମାନଙ୍କ ଅତ୍ୟାଚାର ଦିନକୁ ଦିନ ବଢ଼ିବାରୁ ସେମାନେ ଧର୍ମରକ୍ଷାର୍ଥେ ସଙ୍ଗେ ଯୁଦ୍ଧବିଦ୍ୟା ଶିଖିଲେ । କ୍ରମେ ମୋଗଲ୍ ସାମ୍ରାଜ୍ୟର ପତନ ପରେ ସେମାନେ ଏକ ପ୍ରବଳ ଜାତି ହୋଇ ଉଠି ପଞ୍ଜାବର ଭିନ୍ନ ଭିନ୍ନ ସ୍ଥାନରେ ଛୋଟ ଛୋଟ ରାଜ୍ୟ ବସାଇଲେ ।

ରଣଜିତ୍ ସିଂହ ଏହି ଜାତିର ଜଣେ ମହାବୀର । ସେ ଜଣେ ଶିଖ୍ ସରଦାରଙ୍କ ପୁଅ । ୧୭୮୦ ଖ୍ରୀଷ୍ଟାବ୍ଦରେ ତାଙ୍କର ଜନ୍ମ । ସେ ବାର ବର୍ଷ ବୟସରେ ପିତାଙ୍କୁ ହରାଇ ଘରଧନ୍ଦା ବୁଝିଲେ । ତେଣୁ ସେ କାର୍ଯ୍ୟଦକ୍ଷ ହେଲେ ଲେଖାପଢ଼ା ଶିଖି ପାରିଲେ ନାହିଁ । କିନ୍ତୁ ସେ ବଡ଼ ସାହସୀ ଓ ବୁଦ୍ଧିମାନ୍ ଥିଲେ । ବସନ୍ତ ରୋଗରେ ତାଙ୍କର ଗୋଟିଏ ଆଖି ଫୁଟିଯାଇଥିଲା । ସେ ନିଜ ବୁଦ୍ଧିବିଚକ୍ଷଣତା ବଳରେ ଏକ ପ୍ରବଳ ଶିଖ ସୈନ୍ୟଦଳ ଗଠନ କରି ଗୋଟିକ ପରେ ଗୋଟିଏ ରାଜ୍ୟ ଜିଣିଲେ । ତାଙ୍କ ରାଜ୍ୟ ଉତ୍ତରରେ କାଶ୍ମୀର, ଦକ୍ଷିଣରେ ମୁଲତାନ, ପଶ୍ଚିମରେ ପେଶାବାର ଓ ପୂର୍ବରେ ଶତଦ୍ରୁ ନଦୀ ପର୍ଯ୍ୟନ୍ତ ବ୍ୟାପିଥିଲା । କାଠିରେ କାଳିରେ ଗାର କାଟି ସେ ଏଡ଼େ ବଡ଼ ରାଜ୍ୟର ଆୟବ୍ୟୟ ହିସାବ ରଖୁଥିଲେ ।


ରଣଜିତ୍ ସିଂହ

Digitized by srujanika@gmail.com

ରଣଜିତ୍ ସିଂହଙ୍କ ପ୍ରଭାବ ଦେଖି ପଞ୍ଜାବର ପାତିଆଲା ପ୍ରଭୃତି ଛୋଟଛୋଟ ରାଜ୍ୟର ରାଜାମାନେ ଭୟରେ ଇଂରେଜଙ୍କ ପାଖରେ ଯାଇ ଶରଣ ପଶିଲେ । ସେମାନଙ୍କୁ ରକ୍ଷା କରିବା ପାଇଁ ଭାରତର ସେ ସମୟର ଗଭର୍ଣ୍ଣର ଜେନେରଲ୍ ଲର୍ଡ ମିଣ୍ଟୋ ରଣଜିତ୍ ସିଂହଙ୍କ ପାଖକୁ ଦୂତ ପଠାଇଲେ । ଇଂରେଜଙ୍କ ସହିତ ବିବାଦ କଲେ କିଛି ଅନିଷ୍ଟ ଘଟିବାର ଆଶଙ୍କା କରି ସେ ସନ୍ଧି କରିବାକୁ ରାଜି ହେଲେ । ଏହି ସନ୍ଧିଫଳରେ ଶତଦ୍ରୁ ନଦୀ ଇଂରେଜ ଓ ରଣଜିତ୍‌ଙ୍କ ରାଜ୍ୟର ସୀମାରୂପେ ନିର୍ଦ୍ଦିଷ୍ଟ ରହିଲା । ୧୮୩୯ ଖ୍ରୀଷ୍ଟାବ୍ଦରେ ତାଙ୍କର ମୃତ୍ୟୁ ହେଲା । ସେ ପର୍ଯ୍ୟନ୍ତ ଏହି ସନ୍ଧି ଅନୁସାରେ ସେ ଚଳୁଥିଲେ ।

## ଲର୍ଡ ହେଷ୍ଟିଂସ୍—

୧୮୧୩ ଖ୍ରୀଷ୍ଟାବ୍ଦରେ ଲର୍ଡ ମିଣ୍ଟୋଙ୍କ ପରେ ଲର୍ଡ ହେଷ୍ଟିଂସ ଗଭର୍ଣ୍ଣର ଜେନେରଲ୍ ହୋଇ ଆସିଲେ । ଏହାଙ୍କ ଅମଳରେ ନେପାଳ, ପିଣ୍ଡାରି ଓ ମରହଟ୍ଟା ସମର ହୋଇଥିଲା ।



ଲର୍ଡ ହେଷ୍ଟିଂସ୍

**ନେପାଳ ସମର—**

ନେପାଳୀମାନେ ଅଯୋଧ୍ୟା ପ୍ରଦେଶର ଦୁଇଟି ଅଞ୍ଚଳ ବଳେ ଅଧିକାର କରିବାରୁ ଏହି ଯୁଦ୍ଧ ହେଲା । ଯୁଦ୍ଧରେ ନେପାଳୀମାନେ ହାରିଲେ ଏବଂ ଇଂରେଜମାନେ ସିମଳା, ମସୁରି ଓ ନୈନିତାଲ—ଏହି ତିନୋଟି ସ୍ଥାନ ପାଇଲେ ।

**ପିଣ୍ଡାରି ସମର—**

ପିଣ୍ଡାରିମାନେ ଭିନ୍ନ ଭିନ୍ନ ଜାତିର ଲୋକ । ଡକାଏତି କରିବା ସେମାନଙ୍କର ବ୍ୟବସାୟ ଥିଲା । ପ୍ରଥମେ ସେମାନେ ଦେଶୀୟ ରାଜ୍ୟରେ ପଶି ଲୁଟପାଟ କରୁଥିଲେ । ପରେ ଇଂରେଜ ରାଜ୍ୟରେ ଗୋଳମାଳ କରିବାରୁ

Digitized by srujanika@gmail.com

ଏହି ଯୁଦ୍ଧ ଆରମ୍ଭ ହେଲା । ଏହି ଯୁଦ୍ଧ ୧୮୧୭ ରୁ ୧୮୧୮ ପର୍ଯ୍ୟନ୍ତ ଦୁଇ ବର୍ଷ କାଳ ଲାଗିଲା । ଶେଷରେ ପିଣ୍ଡାରିମାନଙ୍କର ଦଳବଳ ଭାଙ୍ଗିଗଲା ।

ତୃତୀୟ ମରହଟ୍ଟା ସମର—ମରହଟ୍ଟାମାନେ ଭିତରେ ଭିତରେ ପିଣ୍ଡାରି-ମାନଙ୍କୁ ସାହାଯ୍ୟ ଦେଉଥିବା ଜଣାପଡ଼ିବାରୁ ଏବଂ କେତେକ ମରହଟ୍ଟା ରାଜା ଇଂରେଜଙ୍କ ବିରୁଦ୍ଧରେ ଉଠିବାରୁ ଏହି ଯୁଦ୍ଧ ଆରମ୍ଭ ହେଲା । ପେଶବା ତିନୋଟି ଯୁଦ୍ଧରେ ହାରି ପଳାଇଲେ । ମରହଟ୍ଟାଙ୍କର ଅନେକ ରାଜ୍ୟ ଇଂରେଜ ରାଜ୍ୟରେ ମିଶିଲା । ହୋଲକାର ଇଂରେଜଙ୍କ ସାମନ୍ତ ରାଜାରୂପେ ରହିଲେ ।

## ଲର୍ଡ଼ ଆମହର୍ଷ୍ଟ—

୧୮୨୩ ରେ ଏ ଗଭର୍ଣ୍ଣର ଜେନେରଲ ହୋଇ ଆସିଲେ । ଏହାଙ୍କ ସମୟରେ ବ୍ରହ୍ମଦେଶର ରାଜା ଆସାମ, କାଛାର ପ୍ରଭୃତି ରାଜ୍ୟ ଜିଣି ଇଂରେଜ ରାଜ୍ୟ ଆକ୍ରମଣ କରିବାକୁ ଆରମ୍ଭ କଲେ ଏବଂ ବଙ୍ଗଳାରେ ପଶି କେତେକ ଗୋରା ସୈନ୍ୟଙ୍କୁ ମାରିଦେଲେ । ଏହାର ଫଳରେ ୧୮୨୪ ଖ୍ରୀଷ୍ଟାବ୍ଦରେ ଲର୍ଡ଼ ଆମହର୍ଷ୍ଟ ବ୍ରହ୍ମରାଜଙ୍କ ବିରୁଦ୍ଧରେ ଯୁଦ୍ଧ ଘୋଷଣା କଲେ । ଶେଷରେ ସନ୍ଧି ହେଲା । ଇଂରେଜମାନେ ଆସାମ, ଆରାକାନ ଓ ଟେନାସେରିମ ପାଇଲେ ।

ଏହାଙ୍କ ସମୟରେ ଇଂରେଜମାନେ ବିଖ୍ୟାତ ଭରତପୁର ଦୁର୍ଗ ଅଧିକାର କରିଥିଲେ ।

Digitized by srujanika@gmail.com

**ଲର୍ଡ ବେଣ୍ଟିଙ୍କ—**

୧୮୨୮ ଖ୍ରୀଷ୍ଟାବ୍ଦରେ ବେଣ୍ଟିଙ୍କ ଭାରତକୁ ଆସିଲେ । କାଛାଡ଼, କୁର୍ଗ ଓ ମହୀଶୂର ଏହି ସମୟରେ ଇଂରେଜ ରାଜ୍ୟରେ ମିଶିଲା । ଆଗରୁ ଏ ଦେଶରେ ସତୀଦାହ ପ୍ରଥା ଚଳି ଆସୁଥିଲା । ବେଣ୍ଟିଙ୍କ ତାହା ଆଇନଦ୍ୱାରା ବନ୍ଦ କରାଇଲେ । ଏହାଙ୍କ ଅମଳରେ କନ୍ଧ ଜାତିମାନଙ୍କର ହଳଦି କ୍ଷେତ୍ରରେ ନରବଳି ଦେବା ପ୍ରଥା ବନ୍ଦ ହେଲା, ଠଗ ଜାତିର ଅତ୍ୟାଚାର କମିଲା, କୋର୍ଟ କଚେରିମାନଙ୍କରେ ପାର୍ସି ଭାଷା ବଦଳରେ ଇଂରେଜୀ ଭାଷା ଚଳିଲା ।



ଲର୍ଡ ବେଣ୍ଟିଙ୍କ୍

**ଲର୍ଡ ଅକ୍‌ଲଣ୍ଡ—**

ଏ ୧୮୩୬ ରେ ଶାସନଭାର ଗ୍ରହଣ କଲେ । ଆଫଗାନିସ୍ଥାନରେ ବିଦ୍ରୋହ ଆରମ୍ଭ ହେଲା । ସେଠାର ଇଂରେଜ-ପ୍ରତିନିଧିଙ୍କୁ ବିଦ୍ରୋହୀମାନେ ମାରି ପକାଇ ନାନାପ୍ରକାର ଗୋଳମାଳ ଆରମ୍ଭ କରିବାରୁ ଇଂରେଜମାନେ ସେ ଦେଶ ଛାଡ଼ି ପଳାଇ ଆସିଲେ । ବାଟରେ ବିଦ୍ରୋହୀମାନେ ସେମାନଙ୍କୁ ହାଣି ପକାଇଲେ ।

**ଲର୍ଡ ଏଲେନ୍‌ବରୋ—**

ଏହାଙ୍କ ସମୟରେ ସିନ୍ଧୁଦେଶ ଇଂରେଜ ରାଜ୍ୟରେ ମିଶିଲା । ଆଫଗାନ ବିଦ୍ରୋହ ଦବାଇବା ପାଇଁ ଭାରତରୁ ଇଂରେଜ ସୈନ୍ୟ ପଠାଯାଇଥିଲେ ।

Digitized by srujanika@gmail.com

**ଲର୍ଡ଼ ହାର୍ଡ଼ିଞ୍ଜ—**

ରଣଜିତ୍ ସିଂହଙ୍କ ପରେ ପରାକ୍ରମୀ ଶିଖ୍ ସୈନ୍ୟମାନଙ୍କୁ କେହି ଆୟତ୍ତ କରିପାରିଲେ ନାହିଁ । ଶିଖ୍‌ମାନେ ପୂର୍ବର ସନ୍ଧି ନିୟମ ନ ମାନି, ଶତଦ୍ରୁ ନଦୀ ପାର ହୋଇ ଇଂରେଜ ରାଜ୍ୟ ଆକ୍ରମଣ କଲେ । ୧୮୪୫ ଖ୍ରୀଷ୍ଟାବ୍ଦରେ ଚାରିଗୋଟି ଯୁଦ୍ଧରେ ଶିଖ୍‌ମାନେ ଇଂରେଜଙ୍କଦ୍ୱାରା ପରାସ୍ତ ହେଲେ । ପରେ ସନ୍ଧି ହେବାରୁ ଲର୍ଡ ହାର୍ଡିଞ୍ଜ ଯୁଦ୍ଧବ୍ୟୟ ବାବଦରେ କୋଟିଏ ଟଙ୍କା ଦାବି କଲେ ଓ ଶତଦ୍ରୁ ବିପାଶା ନଦୀ ମଝିରେ ଥିବା ରାଜ୍ୟକୁ ଇଂରେଜ ରାଜ୍ୟ ସଙ୍ଗେ ମିଶାଇନେଲେ । ଏହାକୁ ପ୍ରଥମ ଶିଖ୍ ସମର କହନ୍ତି ।



ଲର୍ଡ଼ ହାର୍ଡିଞ୍ଜ

**ଲର୍ଡ଼ ଡେଲ୍‌ହାଉସି—**

ଲର୍ଡ଼ ଡେଲ୍‌ହାଉସି ଭାରତକୁ ଆସିଲା ପରେ ଦ୍ୱିତୀୟ ଶିଖ୍ ଯୁଦ୍ଧ ଆରମ୍ଭ ହେଲା ।

**ଦ୍ୱିତୀୟ ଶିଖ୍ ସମର**—ମୂଲତାନଠାରେ ସେଠାର ଶିଖ୍ ଶାସନକର୍ତ୍ତା ମୂଲରାଜ ଦୁଇଜଣ ଗୋରାଙ୍କୁ ମରେଇ-ଥିବା ଅଭିଯୋଗରେ ଇଂରେଜ ଓ ଶିଖ୍‌ଙ୍କ ମଧ୍ୟରେ ଯୁଦ୍ଧ ଚାଲିଲା । ଏହି ଯୁଦ୍ଧରେ ଇଂରେଜମାନେ ସମସ୍ତ ପଞ୍ଜାବ ରାଜ୍ୟକୁ ଦଖଲ କରିନେଲେ । ରଣଜିତ୍ ସିଂହଙ୍କ ପୁଅ ଦୁଲିପ ସିଂହ ବର୍ଷକୁ ପାଞ୍ଚ ଲକ୍ଷ ଟଙ୍କା ପେନ୍‌ସନ ପାଇ ରହିଲେ ।



ଲର୍ଡ଼ ଡେଲ୍‌ହାଉସି

Digitized by srujanika@gmail.com

ଦ୍ୱିତୀୟ ବ୍ରହ୍ମ ସମର—ବ୍ରହ୍ମ ଦେଶର ଲୋକମାନେ ରେଙ୍ଗୁନରେ ଥିବା ଇଂରେଜ ବେପାରୀଙ୍କ ଉପରେ ଅତ୍ୟାଚାର କରିବାରୁ ଏହି ଯୁଦ୍ଧ ଆରମ୍ଭ ହେଲା । ଯୁଦ୍ଧରେ ଇଂରେଜମାନେ ଲୁଣି ପେଗୁ ପ୍ରଦେଶ ପାଇଲେ ।

ରାଜ୍ୟବିସ୍ତାର—ଏ ଦେଶର ଦେଶୀୟ ରାଜାମାନେ ପୋଷ୍ୟପୁତ୍ର ଗ୍ରହଣ କରିପାରିବେ ନାହିଁ ବୋଲି ଏ ଏକ ଆଇନ ଜାରି କଲେ । ଏହା ଫଳରେ ଅନେକ ରାଜ୍ୟ ଇଂରେଜ ରାଜ୍ୟରେ ମିଶିଲା । ସେତାରା, ଝାନ୍‌ସି ଓ ନାଗପୁର ରାଜାମାନଙ୍କର କୌଣସି ଉତ୍ତରାଧିକାରୀ ନ ଥିବାରୁ ଡେଲହାଉସି ସେହିସବୁକୁ ଇଂରେଜ ରାଜ୍ୟଭୁକ୍ତ କଲେ । ଏହା ଛଡା ଏହାଙ୍କ ଅମଳରେ ବେରାର ଓ ଅଯୋଧ୍ୟା ରାଜ୍ୟ ମଧ୍ୟ ଇଂରେଜ ରାଜ୍ୟରେ ମିଶିଲା । ଅଯୋଧ୍ୟାର ନବାବ ଶାସନ ଚଳାଇ ନ ପାରି ବର୍ଷକୁ ବାର ଲକ୍ଷ ଟଙ୍କା ପେନ୍‌ସନ୍ ପାଇ ରହିଲେ ।

## ଅନ୍ୟାନ୍ୟ କାର୍ଯ୍ୟ—

ଡେଲହାଉସିଙ୍କ ଅମଳରେ ଏ ଦେଶରେ ଅନେକ ପରିବର୍ତ୍ତନ ଘଟିଲା । ରେଲ ଲାଇନ ପଡିଲା, ଟେଲିଗ୍ରାମ ବସିଲା, ଚିଠି ପଠାଇବାର ସୁବିଧା ପାଇଁ ଦୁଇ ପଇସିଆ ଡାକଟିକଟ ଚଳିଲା । ଏହା ଛଡା ଅନେକ ସଡକ ପଡିଲା, ଦେଶୀୟ ଭାଷା ଶିକ୍ଷା ପାଇଁ ସ୍କୁଲ୍ କଲେଜ ବସିଲା, କୃଷି ସୁବିଧା ପାଇଁ କେତେକ ପ୍ରଦେଶରେ କେନାଲ ଖୋଲା ହେଲା, ଶିକ୍ଷାବିଭାଗକୁ ଚଳାଇବା ପାଇଁ ବଡ କର୍ମଚାରୀ ନିଯୁକ୍ତ ହେଲେ ।

## ସିପାହୀ ବିଦ୍ରୋହ—

ଲର୍ଡ ଡେଲହାଉସିଙ୍କ ପରେ ଲର୍ଡ କ୍ୟାନିଂ ଭାରତର ଗଭର୍ଣ୍ଣର ଜେନେରାଲ ହୋଇ ଆସିଲେ । ଡେଲହାଉସିଙ୍କ ଅମଳରେ ଏ ଦେଶରେ ଯେଉଁସବୁ ପରିବର୍ତ୍ତନ ଘଟିଲା, ତାହା ସବୁ ଦେଖି ଅନେକେ ମନେ କଲେ ଯେ, ଇଂରେଜମାନେ ଆସ୍ତେ ଆସ୍ତେ ଭାରତବାସୀଙ୍କୁ ଖ୍ରୀଷ୍ଟିୟାନ କରିଦେବେ । ସେହି ସମୟରେ ଇଂରେଜମାନେ ଶିଖ, ମରହଟ୍ଟା ଓ ଗୁର୍ଖାମାନଙ୍କୁ ଜବତ କରିବା ପାଇଁ ଏ ଦେଶର ଲୋକଙ୍କୁ ଯୁଦ୍ଧ ଶିକ୍ଷା

Digitized by srujanika@gmail.com

ଦେଇ ଅନେକ ସୈନ୍ୟଦଳ ରଖାଇଥିଲେ । ଯେଉଁ ରାଜାମାନଙ୍କଠାରୁ ରାଜ୍ୟ ଛଡାଇ ନିଆଯାଇଥିଲା, ସେମାନେ ଦେଶତମାମ ବୁଲି ଇଂରେଜଙ୍କ ବିରୁଦ୍ଧରେ ସିପାହୀମାନଙ୍କୁ ମତାଇଲେ ।

ସେହି ସମୟରେ ଏକ ପ୍ରକାର ନୂଆ ବନ୍ଧୁକ ଆସିଥାଏ । ସୈନ୍ୟମାନଙ୍କୁ ସେହି ବନ୍ଧୁକରେ ଥିବା ବାରୁଦ ମୁଣାକୁ ଦାନ୍ତରେ କାଟିବାକୁ ପଡୁଥାଏ । ତେଣୁ ଶତ୍ରୁମାନେ କହି ବୁଲିଲେ ଯେ, ସେହି ମୁଣାରେ ଗାଈ ଓ ଘୁଷୁରିର ଚର୍ବି ଅଛି । ଇଂରେଜମାନେ ହିନ୍ଦୁ ଓ ମୁସଲମାନଙ୍କ ଜାତି ନେବାକୁ ଏପରି କରିଛନ୍ତି । ଜ୍ୟୋତିଷୀମାନେ କହି ବୁଲିଲେ ଯେ, କମ୍ପାନୀର ରାଜତ୍ୱ ଶହେ ବର୍ଷ ହେଲାଣି , ଏଣିକି ରାଜତ୍ୱ ସରିଯିବ ।

୧୮୫୭ ମସିହା ମଇ ମାସ ୧୦ ତାରିଖରେ ମୀରଟଠାରେ ସିପାହୀମାନେ ବିଦ୍ରୋହୀ ହେଲେ । ସେମାନେ ଯେଉଁଠି ଇଂରେଜଙ୍କୁ ଦେଖିଲେ, ମାରିଲେ । ଜେଲଖାନା ଭାଙ୍ଗି ବନ୍ଦୀମାନଙ୍କୁ ଖଲାସ କରିଦେଲେ । ଦିଲ୍ଲୀର ସିପାହୀମାନେ ବିଦ୍ରୋହୀଙ୍କ ସଙ୍ଗେ ମିଶିଲେ । ମୋଗଲ ବଂଶର ବାହାଦୁରସାହାଙ୍କୁ ଭାରତର ସମ୍ରାଟ୍ ବୋଲି ଘୋଷଣା କରାଗଲା । କ୍ରମେ ଆଗ୍ରା, ଅଯୋଧ୍ୟା, ମଧ୍ୟ-ଭାରତର ଚାରିଆଡେ ବିଦ୍ରୋହ ଦେଖାଗଲା । ଏହିପରି ଦୁଇ ଲକ୍ଷ ସିପାହୀ ବିଦ୍ରୋହୀ ହେଲେ । ପେଶବାଙ୍କ ବଂଶଧର ନାନାସାହେବ କାନପୁରର ବିଦ୍ରୋହୀ ସେନାଙ୍କର ନେତା ହୋଇ ଇଂରେଜ-ସେନାକୁ ଆକ୍ରମଣ କଲେ । ଇଂରେଜ-ମାନେ ନୌକାରେ ଗଙ୍ଗା ପାରି ହେଉଥିବା ବେଳେ ସେମାନଙ୍କୁ ଗୁଳି କରି ମାରି ପକାଇଲେ । ଯେଉଁ ଇଂରେଜ ସ୍ତ୍ରୀ ଓ ପିଲାମାନେ କାନପୁରରେ ଥିଲେ, ତାଙ୍କୁ ବନ୍ଦୀ କରି ମାରି ପକାଇ କୂଅ ଭିତରକୁ ଫିଙ୍ଗିଦେଲେ । ଏହିପରି ନାନା ପ୍ରକାର ଗଣ୍ଡଗୋଳ ଦେଖି ଲର୍ଡ କ୍ୟାନିଙ୍ଗ ଘୋର ବିପଦରେ ପଡିଲେ । ସେତେବେଳେ ଆଜିକାଲି ପରି ଚାରିଆଡେ ରେଲ୍ ଲାଇନ୍ ନ ଥିଲା କିମ୍ବା ଛଟି ପଡ ଶୀଘ୍ର ଯିବା ଆସିବାର ବନ୍ଦୋବସ୍ତ ନ ଥିଲା । ତଥାପି କ୍ୟାନିଙ୍ଗ ସାହସ ବାନ୍ଧି ବିଦ୍ରୋହ ଦମନ କରିବାକୁ ଲାଗିଲେ । ଶିଖ, ହାଇଦ୍ରାବାଦର ନିଜାମ ଓ ନେପାଳର ମହାରାଜା ଇଂରେଜମାନଙ୍କୁ ସାହାଯ୍ୟ ଦେଲେ । କ୍ରମେ

Digitized by srujanika@gmail.com

ଇଂରେଜମାନେ ଦିଲ୍ଲୀ ଓ ଲକ୍ଷ୍ନୌ ଅଧିକାର କଲେ । ବାହାଦୁରସାହ ରେଙ୍ଗୁନରେ ନିର୍ବାସିତ ହୋଇ ରହିଲେ । ନାନାସାହେବ ନେପାଳର ଜଙ୍ଗଲକୁ ପଳାଇଲେ । ତାଙ୍କର ଆଉ ପତ୍ତା ମିଳିଲା ନାହିଁ । ଶେଷରେ ଦେଶରେ ଶାନ୍ତି ଫେରିଆସିଲା ।

**ମହାରାଣୀ ଭିକ୍ଟୋରିଆଙ୍କ ଘୋଷଣାପତ୍ର—**

ଦେଶରେ ଶାନ୍ତି ଆଣିବା ନିମନ୍ତେ ମହାରାଣୀ ଭିକ୍ଟୋରିଆ ୧୮୫୮ ମସିହା ନଭେମ୍ବର ପହିଲାରେ ଏକ ଘୋଷଣା ପତ୍ର ସମସ୍ତ ଭାରତବାସୀଙ୍କ ପାଖକୁ ଲେଖି ପଠାଇଲେ । ତାହା ଭାରତରେ ଘୋଷଣା କରାଗଲା । ସେଥିରେ ସେ ଲେଖିଥିଲେ, କାହାର ଧର୍ମ ଓ ଜାତିରେ ଓ ଚାଲିଚଳଣରେ ଇଂରେଜମାନେ ହାତ ଦେବେ ନାହିଁ । ସେମାନଙ୍କୁ ବରଂ ଶତ୍ରୁହସ୍ତରୁ ରକ୍ଷା କରିବେ । ଦେଶୀୟ ରାଜାମାନେ ଅପୁତ୍ରକ ହୋଇ ମଲେ ପୋଷ୍ୟପୁତ୍ର ଗ୍ରହଣ କରି ପାରିବେ । ଲୋକେ ନ୍ୟାୟ ବିଚାର ପାଇବେ । ଯେଉଁ ଲୋକମାନେ ଇଂରେଜ ସରକାର ବିରୁଦ୍ଧରେ ଯୁଦ୍ଧ କରିଥିଲେ ବା ଯୁଦ୍ଧରେ ସାହାଯ୍ୟ କରିଥିଲେ ସେମାନଙ୍କୁ କ୍ଷମା ଦିଆଗଲା ।



ମହାରାଣୀ ଭିକ୍ଟୋରିୟା

ସମସ୍ତ ଭାରତବାସୀ ସମାନ ଅଧିକାର ପାଇବେ । ସମସ୍ତଙ୍କ ପାଇଁ ଏକା ଆଇନ ପ୍ରଚଳିତ ହେବ ।

**ପ୍ରଥମ ଭାଇସରୟ ଲର୍ଡ କ୍ୟାନିଙ୍ଗ [୧୮୫୮-୧୮୬୨]—**

ମହାରାଣୀ ଭିକ୍ଟୋରିଆଙ୍କ ଭାଇସରୟ ବା ପ୍ରତିନିଧି ହୋଇ ଲର୍ଡ କ୍ୟାନିଙ୍ଗ ପ୍ରଥମ ଭାଇସରୟ ହେଲେ । ଏହାଙ୍କ ଅମଳରେ ସୁପ୍ରିମ୍ କୋର୍ଟ ବଦଳରେ ପ୍ରତି ପ୍ରଦେଶରେ ହାଇକୋର୍ଟମାନ ବସିଲା । ବେସରକାରୀ ମେମ୍ବରମାନେ କାଉନ୍ସିଲ ବା ଲାଟ ସଭାରେ ସ୍ଥାନ ପାଇଲେ । ସିପାହୀ ବିଦ୍ରୋହରେ

Digitized by srujanika@gmail.com

ସରକାରଙ୍କର ବହୁତ ଟଙ୍କା ଅଭାବ ପଡ଼ିବାରୁ ଧନୀ ଲୋକଙ୍କ ଉପରେ ଇନକମ୍ ଟ୍ୟାକସ [ଆୟ କର] ବସିଲା । ଏହାଙ୍କଦ୍ୱାରା ଦେଶରେ କାଗଜର ନୋଟ ଚଳିଲା ।

## ଲର୍ଡ଼ ଲରେନ୍ସ (୧୮୬୪–୧୮୬୯)—

କ୍ୟାନିଙ୍ଗଙ୍କ ପରେ ଲର୍ଡ ଏଲଗିନ୍ ଭାଇସରାୟ ହେଲେ । କିନ୍ତୁ ସେ ଅଳ୍ପ ଦିନ ପରେ ମରିଯିବାରୁ ସାର ଜନ୍ ଲରେନ୍ସ ଭାଇସରାୟ ହେଲେ । ଏହାଙ୍କ ଅମଳରେ ଓଡ଼ିଶାରେ ୧୮୬୬ ମସିହାରେ ଭୀଷଣ ଦୁର୍ଭିକ୍ଷ ପଡ଼ିଥିଲା । ସେତେବେଳେ ଦିବ୍ୟସିଂହ ଦେବ ପୁରୀର ଠାକୁରରାଜା ଥାନ୍ତି । ତାଙ୍କ ରାଜତ୍ୱର ନ ଅଙ୍କ ସେ ବର୍ଷ ପଡ଼ିଥାଏ । ତେଣୁ ଏହି ଦୁର୍ଭିକ୍ଷକୁ ଓଡ଼ିଶାର ନ ଅଙ୍କ ଦୁର୍ଭିକ୍ଷ କହନ୍ତି । ୧୮୬୫ ଓ ୧୮୬୬ ଏହି ଦୁଇ ବର୍ଷ ଫସଲ ନଷ୍ଟ ହୋଇଯିବାରୁ ଅନ୍ନ ବିନା ଚାରିଆଡ଼େ ହାହାକାର ପଡ଼ିଲା । ଖାଇବାକୁ ନ ପାଇ ଲକ୍ଷ ଲକ୍ଷ ଲୋକ ବାଟଘାଟରେ ପଡ଼ି ମଲେ । ଏପରି କି ମା ପୁଅଠାରୁ ଛଡ଼ାଇ ଖାଇଗଲା । ପୁଅ ମରି ଶୋଇଥିବା ବେଳେ ମାଆ ଆଖିରୁ ଲୁହ ଗଡ଼ିଲା ନାହିଁ । କେତେ ଗାଁଗଣ୍ଡା ଶୂନ୍ୟ ପଡ଼ିଗଲା । ବାଟଘାଟ ପଶୁ ମୁର୍ଦ୍ଦାରରେ ପୂରିଗଲା । ଓଡ଼ିଶାର ପ୍ରାୟ ୨୦ ଲକ୍ଷ ଲୋକ ଏ ଦୁର୍ଭିକ୍ଷରେ ମରି ଯାଇଥିଲେ ।

ଆଫଗାନିସ୍ଥାନରେ ଦୋସ୍ତ ମହମ୍ମଦ ମରିଯିବାରୁ ଆଫଗାନ ସିଂହାସନ ପାଇଁ ବହୁ ବିବାଦ ଲାଗିଲା । ଶେଷରେ ଦୋସ୍ତ ମହମ୍ମଦଙ୍କ ପୁଅ ସେର ଅଲି ରାଜା ହେଲେ । ଆଫଗାନିସ୍ଥାନର ରାଜାମାନଙ୍କୁ ଅମିର ବୋଲାଯାଏ । ବ୍ରିଟିଶ ସରକାର ସେର ଅଲିଙ୍କୁ ଅମିର ବୋଲି ସ୍ୱୀକାର କଲେ ।

## ଲର୍ଡ଼ ମେୟୋ (୧୮୬୯–୧୮୭୨)—

ଆଫଗାନ୍ ଅମିର ସେର ଅଲି ଇଂରେଜ ସରକାରଙ୍କ ସହିତ ହୋଇଥିବା ପୂର୍ବ ସନ୍ଧିରେ କିଛି ଗୋଳମାଳ କରିବାରୁ ଲର୍ଡ ମେୟୋ ଅମ୍ବାଲାଠାରେ କଥାବାର୍ତ୍ତା ହୋଇ ତାଙ୍କ ସଙ୍ଗେ ବନ୍ଧୁତା ସ୍ଥାପନ କଲେ । ସେଠାରୁ ସେ ରେଙ୍ଗୁନ ଦେଇ ଆଣ୍ଡାମାନ ଦ୍ୱୀପକୁ ବୁଲିଗଲେ । ସେଠାରେ ଜଣେ

Digitized by srujanika@gmail.com

ପଠାଣ କଏଦୀ ତାଙ୍କୁ ମାରିଦେଲା । ମହାରାଣୀଙ୍କ ଦ୍ୱିତୀୟ ପୁତ୍ର ଡିଉକ୍ ଅବ୍ ଏଡିନ୍‌ବରା ଏହାଙ୍କ ଅମଳରେ ଭାରତ ବୁଲି ଆସିଥିଲେ ।

## ଲର୍ଡ ନର୍ଥବ୍ରୁକ୍ (୧୮୭୨-୧୮୭୬)—

ଏହାଙ୍କ ଅମଳରେ ଯୁବରାଜ ସପ୍ତମ ଏଡୱାର୍ଡ ଭାରତକୁ ବୁଲି ଆସିଥିଲେ । ବିହାରରେ ଏକ ଭୟାନକ ଦୁର୍ଭିକ୍ଷ ହୋଇଥିଲା ।

## ଲର୍ଡ ଲିଟନ୍ (୧୮୭୬-୧୮୮୦)—

ଲିଟନ୍ ଦିଲ୍ଲୀଠାରେ ୧୮୭୭ ଜାନୁୟାରୀ ପହିଲିରେ ଏକ ଦରବାର କରାଇଥିଲେ । ସେଠାରେ ମହାରାଣୀ ଭିକ୍ଟୋରିଆଙ୍କୁ ଭାରତସମ୍ରାଜ୍ଞୀ ବୋଲି ଘୋଷଣା କରାଗଲା । ଏହାଙ୍କ ଅମଳରେ କୌଣସି ଲୋକ ବିନା ପାସରେ କୌଣସି ବନ୍ଧୁକ ବା ଅସ୍ତ୍ରଶସ୍ତ୍ର ରଖି ପାରିବେ ନାହିଁ ବୋଲି ଆଇନ ଜାରି ହେଲା । ପ୍ରାଦେଶିକ ଭାଷାମାନଙ୍କରେ ଛପା ହେଉଥିବା ସମ୍ବାଦ-ପତ୍ରମାନଙ୍କର ସ୍ୱାଧୀନ ମତ ପ୍ରକାଶକୁ ଜବତ୍ କରିବା ପାଇଁ ଆଇନ ଜାରି ହୋଇଥିଲା ।

ଦ୍ୱିତୀୟ ଆଫଗାନ୍ ସମର—ଲର୍ଡ ନର୍ଥବ୍ରୁକ୍ ଆଫଗାନ୍ ଅମିରଙ୍କ ସଙ୍ଗେ ସଦ୍‌ଭାବ ରଖି ପାରି ନ ଥିଲେ । ଅମିର ରୁଷଆ ସଙ୍ଗେ ବନ୍ଧୁତା ରଖିବାକୁ ଚେଷ୍ଟା କଲେ । ଲିଟନଙ୍କ ଅମଳରେ ଅମିର ସେର ଅଲି ରୁଷିଆ ରାଜଦୂତଙ୍କୁ ନିଜ ରାଜଧାନୀରେ ରଖିବାରୁ ଇଂରେଜ ସରକାର ତାଙ୍କ ସଙ୍ଗେ ଯୁଦ୍ଧ ଆରମ୍ଭ କଲେ । ସେର ଅଲି ଯୁଦ୍ଧରେ ହାରି ରୁଷିଆ ପଳାଇଲେ ଓ ସେଠାରେ ମରିଗଲେ । ତାଙ୍କ ପୁଅ ୟାକୁବ୍ ଖାଁ ଯୁଦ୍ଧ ଚଳାଇଲେ । ୟାକୁବ୍ ଶେଷରେ ଗଣ୍ଡମୁକଠାରେ ସନ୍ଧି କଲେ । ଇଂରେଜ ଦୂତ କାବୁଲଠାରେ ଯାଇ ରହିଲେ । କିଛିଦିନ ପରେ ଜଣେ ଇଂରେଜ ଦୂତଙ୍କୁ ମାରିଦେବାରୁ ପୁଣି ଯୁଦ୍ଧ ହେଲା । ଲିଟନଙ୍କ ପରେ ରିପନ୍ ଆସି ଯୁଦ୍ଧ ଚଳାଇଲେ । ୟାକୁବ୍ ପଳାଇଲେ । ତାଙ୍କ ପୁତୁରା ଅବଦୁଲ ରହମନ୍ ଇଂରେଜଙ୍କ ବନ୍ଧୁ ହୋଇ ଅମିର ହେଲେ ।

Digitized by srujanika@gmail.com

## ଲର୍ଡ଼ ରିପନ (୧୮୮୦-୧୮୮୪)—

ସ୍ୱାୟତ୍ତ-ଶାସନ—ରିପନ୍ ପ୍ରଜାମାନଙ୍କର ମଙ୍ଗଳ କାମନା କରୁଥିଲେ । ତାଙ୍କର ଇଚ୍ଛା ଥିଲା, ଭାରତବାସୀ ନିଜକୁ ଶାସନ କରିବାକୁ ଶିଖନ୍ତୁ । ଏକାବେଳକେ ରାଜ୍ୟର ସବୁ ଭାର ତାଙ୍କୁ ଦେଲେ ସେମାନେ ଚଲାଇ ପାରିବେ ନାହିଁ । ସେମାନେ କିଛି କିଛି କାର୍ଯ୍ୟର ଭାର ନେଇ ଆସ୍ତେ ଆସ୍ତେ ଉପଯୁକ୍ତ ହୋଇ ଶେଷରେ ସମସ୍ତ ଭାର ନେଲେ, ତାହା ଚଳାଇ ପାରିବେ । ସେ ପ୍ରତ୍ୟେକ ଜିଲାରେ ଡିଷ୍ଟ୍ରିକ୍ଟ ବୋର୍ଡ ବା ଜିଲା ବୋର୍ଡ ଓ ଲୋକାଲ୍ ବୋର୍ଡ ବସାଇଲେ । ସହରମାନଙ୍କରେ ମୁନିସପାଲିଟି ବସାଇଲେ । ଉପଯୁକ୍ତ ଶିକ୍ଷିତ ଲୋକଙ୍କ ହାତରେ ସେ ସବୁ ଭାର ଦେଲେ । ଜିଲାର ଓ ସହରର ସବୁ ବିଭାଗ ଦିଆଯାଇ ନ ଥିଲା । ସେମାନଙ୍କ ଶିଖିବା ପାଇଁ କେତୋଟି ମାତ୍ର ବିଭାଗ ଦିଆଯାଇଥିଲା । ରିପନଙ୍କ ଅମଲରେ ପ୍ରଥମେ ସେନ୍‌ସସ୍ ବା ଜନଗଣନା ଆରମ୍ଭ ହେଲା । ଲିଟନଙ୍କର ପ୍ରେସ୍ ଆଇନ କୋହଳ ହୋଇଥିଲା । ରିପନଙ୍କ କାର୍ଯ୍ୟକଳାପରେ ଭାରତବାସୀ ସନ୍ତୁଷ୍ଟ ଥିଲେ । ସେ ଇସ୍ତଫା ଦେଇ ଗଲାବେଳେ ଅନେକ ଲୋକ କାନ୍ଦିଥିଲେ ।



ଲର୍ଡ ରିପନ୍

## ଲର୍ଡ଼ ଡଫରିନ୍ (୧୮୮୪-୧୮୮୮)—

ଡଫରିନ୍‌ଙ୍କ ଅମଲରେ ମହାରାଣୀ ଭିକ୍‌ଟୋରିଆଙ୍କର ୫୦ ବର୍ଷ ରାଜତ୍ୱ ପୂରିସିବାରୁ ଜୁବିଲି ଉତ୍ସବ ହୋଇଥିଲା । ଆହୁରି ମଧ୍ୟ ୧୮୮୫ ଖ୍ରୀଷ୍ଟାବ୍ଦରେ ଭାରତର ମହାଜାତୀୟ ସଭା କଂଗ୍ରେସ ସ୍ଥାପିତ ହୋଇଥିଲା ।

ତୃତୀୟ ବ୍ରହ୍ମ ସମର—ବ୍ରହ୍ମରାଜ ଥିବ୍ ନିଜ ରାଜ୍ୟର ପ୍ରଜାମାନଙ୍କ ଉପରେ ବଡ ଅତ୍ୟାଚାର କରୁଥିଲେ । ଡକାଏତମାନେ ତାଙ୍କ ରାଜ୍ୟ ଲୁଟି ନେଲେ ମଧ୍ୟ ସେମାନଙ୍କୁ ଦମନ କରିବା ପାଇଁ ସେ କିଛି କରୁ ନ ଥିଲେ । ଏହାର ଫଳରେ ତୃତୀୟ ବ୍ରହ୍ମ-ସମର ହେଲା । ଥିବ୍ ପରାଜିତ ହେଲେ । ୧୮୮୬ରେ ବ୍ରହ୍ମ ଦେଶ ଇଂରେଜ ରାଜ୍ୟର ଅନ୍ତର୍ଭୁକ୍ତ ହେଲା ।

Digitized by srujanika@gmail.com

**ଲର୍ଡ଼ ଲାନ୍‌ସଡ଼ାଉନ (୧୮୮୮—୧୮୯୪)—**

ମଣିପୁର ଯୁଦ୍ଧ ଏହାଙ୍କ ଅମଳର ପ୍ରଧାନ ଘଟଣା । ମଣିପୁର ରାଜ୍ୟର ଲୋକେ ଆସାମର ଚିଫ୍ କମିସନର ଓ କେତେକ ଇଂରେଜ କର୍ମଚାରୀଙ୍କୁ ମାରି ପକାଇବାରୁ ଏହି ଯୁଦ୍ଧ ହୋଇଥିଲା । ମଣିପୁର ରାଜାଙ୍କୁ ସିଂହାସନରୁ ତଡ଼ି ଦେଇ ସେ ସେହି ବଂଶର ଅନ୍ୟ ଜଣଙ୍କୁ ରାଜଗାଦୀରେ ବସାଇଲେ ।

୧୮୯୨ ଖ୍ରୀଷ୍ଟାବ୍ଦରେ ଜିଲ୍ଲା ବୋର୍ଡ ଓ ମ୍ୟୁନିସପାଲିଟି ତରଫରୁ ପ୍ରତିନିଧି ଲାଟ୍ ସଭାକୁ ଯିବାର ସ୍ଥିର ହୋଇଥିଲା ।

**ଦ୍ୱିତୀୟ ଲର୍ଡ଼ ଏଲଗିନ୍ (୧୮୯୪—୧୮୯୯)—**

ଏହି ଏଲଗିନ୍ ପ୍ରଥମ ଏଲଗିନ୍‌ଙ୍କ ପୁଅ । ଏହାଙ୍କ ଅମଳରେ ସର୍ବ ପ୍ରଥମେ ବମ୍ବେଠାରେ ପ୍ଲେଗ ରୋଗ ଦେଖାଗଲା । ସେହି ଭୀଷଣ ରୋଗ ଭାରତର ଅନ୍ୟାନ୍ୟ ସ୍ଥାନରେ ମଧ୍ୟ ଦେଖାଗଲା । ସେଥିରେ ଅନେକ ଲୋକ ମରିଗଲେ । ବିହାର, ମଧ୍ୟ ପ୍ରଦେଶ, ଯୁକ୍ତ ପ୍ରଦେଶରେ ଦୁର୍ଭିକ୍ଷ ପଡ଼ିଥିଲା । ସରକାରଙ୍କ ତରଫରୁ ସାହାଯ୍ୟ ଦିଆଯାଇଥିଲା । ମହାରାଣୀଙ୍କ ୬୦ ବର୍ଷ ରାଜତ୍ୱ ପୂରିଯିବାରୁ ହୀରକ ଜୁବିଲି ଉତ୍ସବ ୧୮୯୭ରେ ହୋଇଥିଲା ।

**ଲର୍ଡ଼ କର୍ଜନ୍ (୧୮୯୯—୧୯୦୫)—**

କର୍ଜନ୍ ଶାସନର ପ୍ରତ୍ୟେକ ବିଭାଗରେ କିଛି ନା କିଛି ପରିବର୍ତ୍ତନ କରିଯାଇଅଛନ୍ତି । ସେ ଶିକ୍ଷା ବିଭାଗ ଓ ପୋଲିସ ବିଭାଗରେ ନୂଆ ଆଇନ ଜାରି କରିଥିଲେ । ଶିକ୍ଷାର ଉନ୍ନତି ପାଇଁ ସେ ଚେଷ୍ଟା କରିଥିଲେ । ପୋଲିସ କର୍ମଚାରୀମାନେ ଲାଞ୍ଚ ଖାଉଥିବାରୁ ସେ ସେ ବିଭାଗରେ ବେଶୀ ଦରମାରେ ଉଚ୍ଚ ଶିକ୍ଷିତ ଓ ଭଲ ଲୋକ ରଖିବାକୁ ବ୍ୟବସ୍ଥା କରିଥିଲେ । ଜେଲ ବିଭାଗର ମଧ୍ୟ ସଂସ୍କାର କରାଯାଇଥିଲା ।


ଲର୍ଡ କର୍ଜନ

Digitized by srujanika@gmail.com

ଭାରତରେ ଥିବା ପୁରୁଣା ଦେଉଳ, କୋଠାବାଡ଼, ମସଜିଦ୍ ସବୁ ନଷ୍ଟ ନ ହୋଇ କପର ବେଶୀ ଦିନ ରହିବ, ସେଥିପାଇଁ ସେ ଗୋଟିଏ ନୂଆ ବିଭାଗ ଖୋଲିଲେ । ତାହାର ନାଁ ପ୍ରତ୍ନତତ୍ତ୍ୱ ବିଭାଗ । ସେ ବିଭାଗରେ କର୍ମଚାରୀ ରହିଲେ । ସରକାରଙ୍କ ତରଫରୁ ଟଙ୍କା ଖର୍ଚ୍ଚ କରାଯାଇ ପୁରାତନ କୀର୍ତ୍ତିମାନ ବେଶୀ ଦିନ ରହିବାର ବ୍ୟବସ୍ଥା କରାଗଲା ।

ବଙ୍ଗ ବିଚ୍ଛେଦ—କର୍ଜନ ଦେଖିଲେ ବଙ୍ଗଳାର ଶାସନ ଜଣେ ଲାଟଙ୍କ ଦ୍ୱାରା ସୁଚାରୁରୂପେ ଚଳିଲା ନାହିଁ । ତେଣୁ ସେ ବଙ୍ଗଳାକୁ ଦୁଇ ଭାଗ କରିଦେଲେ । ବଙ୍ଗଳାର କେତେକ ଅଂଶ, ବିହାର ଓ ଓଡ଼ିଶା ମିଶି ବଙ୍ଗ ପ୍ରଦେଶ ହେଲା । ପୂର୍ବବଙ୍ଗ ଓ ଆସାମ ମିଶି ଆଉ ଗୋଟିଏ ପ୍ରଦେଶ ହେଲା । ଏହି ବିଚ୍ଛେଦ ଫଳରେ ବଙ୍ଗରେ ବୈମନସ୍ୟ ଜାତ ହେଲା । ଦେଶରେ ଅଶାନ୍ତି ଦେଖାଗଲା । ସାହେବମାନଙ୍କୁ ମାରିବାକୁ ନାନା ଷଡଯନ୍ତ୍ର ଚାଲିଲା । ବିଲାତି ଜିନିଷ ବର୍ଜନ କରାଗଲା । ସ୍ୱଦେଶୀ ଜିନିଷର ପ୍ରଚାର ପାଇଁ ଆୟୋଜନ ହେଲା ।

କର୍ଜନଙ୍କ ଅମଳରେ ମହାରାଣୀ ଭିକ୍ଟୋରିଆ ୧୯୦୧ ମସିହା ଜାନୁଆରୀ ୨୨ ତାରିଖରେ ୮୦ ବର୍ଷ ବୟସରେ ମରିଗଲେ । ତାଙ୍କ ପୁଅ ସପ୍ତମ ଏଡଓଆର୍ଡ ଇଂଲଣ୍ଡର ରାଜା ଓ ଭାରତର ସମ୍ରାଟ୍ ହେଲେ ।

କର୍ଜନଙ୍କ ଅମଳରେ ଆଉ ଗୋଟିଏ ଭଲ କାମ ହୋଇଥିଲା । ସେତେବେଳେ ମହାଜନମାନେ କୃଷକମାନଙ୍କୁ ବଡ ହଇରାଣ କରୁଥିଲେ । ଫଳରେ କୃଷିର କିଛି ଉନ୍ନତି ହୋଇପାରୁ ନ ଥିଲା । ଗରିବ ପ୍ରଜାମାନେ ମହାଜନଙ୍କ ହାତରୁ ରକ୍ଷା ପାଇ କୃଷିର କପରି ଉନ୍ନତି କରି ପାରିବେ, ସେଥି ପ୍ରତି କର୍ଜନ ଦୃଷ୍ଟି ଦେଇଥିଲେ । ତୁମ୍ଭେମାନେ ଆଜିକାଲି ଓଡ଼ିଶାର ଗାଁଏ ଗାଁଏ ଯେଉଁ କୋ-ଅପରେଟିଭ ସୋସାଇଟି ଓ କୋ-ଅପରେଟିଭ୍ ବ୍ୟାଙ୍କ ଦେଖୁଛ, ତାହା କର୍ଜନଙ୍କ ଅମଳରେ ଆରମ୍ଭ ହୋଇଥିଲା । ଏହି ବ୍ୟାଙ୍କ ଲୋକଙ୍କୁ ଅଳ୍ପ ସୁଧରେ ଟଙ୍କା କରଜ ଦିଏ ।

**ଦ୍ୱିତୀୟ ଲର୍ଡ଼ ମିଣ୍ଟୋ (୧୯୦୫—୧୯୧୦)—**

ଏହି ମିଣ୍ଟୋ ପ୍ରଥମ ମିଣ୍ଟୋଙ୍କ ନାତିର ପୁଅ । ଏହାଙ୍କ ଅମଳରେ ଶାସନସଂସ୍କାର ପ୍ରଧାନ ଘଟଣା । ମିଣ୍ଟୋ ଭାରତରେ ଭାଇସରାୟ ଥିଲା-

Digitized by srujanika@gmail.com


ଲର୍ଡ ମିଣ୍ଟୋ

ବେଳେ ମର୍ଲ୍ଲୀ ସାହେବ ଭାରତ ମନ୍ତ୍ରୀ ଥିଲେ । ଏହି ନୂଆ ଶାସନସଂସ୍କାରକୁ "ମିଣ୍ଟୋ-ମର୍ଲ୍ଲୀ ଶାସନସଂସ୍କାର" କହନ୍ତି । ଏ ସଂସ୍କାର ଅନୁସାରେ କେତୋଟି ଛୋଟ ପ୍ରଦେଶ ଛଡ଼ା ଅନ୍ୟ ପ୍ରଦେଶରେ ବ୍ୟବସ୍ଥା-ସଭା ଗଢ଼ା ହେଲା । ଏହି ସଭାରେ ତିନି ପ୍ରକାର ସଭ୍ୟ ରହିଲେ— ସରକାରୀ କର୍ମଚାରୀ, ସରକାର ମନୋନୀତ କରି ପଠାଇଥିବା ସଭ୍ୟ ଓ ବେ-ସରକାରୀ ସଭ୍ୟ । ବେ-ସରକାରୀ ସଭ୍ୟଙ୍କ ସଂଖ୍ୟା ସବୁଠାରୁ ବେଶୀ ହେଲା ।

ଏହା ଛଡ଼ା ଭାଇସରୟଙ୍କ ବ୍ୟବସ୍ଥା ସଭା ରହିଲା । ପ୍ରାଦେଶିକ ସଭା ପରି ଏଥିରେ ମଧ୍ୟ ତିନି ପ୍ରକାର ସଭ୍ୟ ରହିଲେ । ପ୍ରାଦେଶିକ ସଭାମାନେ ନିଜ ନିଜ ମଧ୍ୟରୁ ଯାହାଙ୍କୁ ବାଛି ପ୍ରତିନିଧି ପଠାଇଲେ, ସେମାନେ ଏ ସଭାରେ ବେସରକାରୀ ସଭ୍ୟ ହେଲେ । ଭାଇସରୟଙ୍କ ସଭା ବା କାଉନ୍ସିଲ ସାରା ଭାରତ ପାଇଁ ଆଇନ ତିଆରି କଲେ ଓ ଆୟବ୍ୟୟ ହିସାବ ଦେଖିଲେ । ସଭ୍ୟମାନଙ୍କ ମତ ଅନୁସାରେ ରାଜସ୍ୱ ବ୍ୟୟ କରାଗଲା ।

ଏହି ଶାସନ ସଂସ୍କାର ୧୯୨୧ ପର୍ଯ୍ୟନ୍ତ ୧୨ ବର୍ଷ କାଳ ଚାଲିଲା ।

ମିଣ୍ଟୋଙ୍କ ଶାସନର ଶେଷ କାଳକୁ ୧୯୧୦ ମସିହା ମଇ ମାସରେ ସମ୍ରାଟ୍ ସପ୍ତମ ଏଡଓ୍ୱାର୍ଡ ମରିଗଲେ । ତାଙ୍କର ପୁଅ ପଞ୍ଚମ ଜର୍ଜ ରାଜ-ଗାଦୀରେ ବସିଲେ ।

## ଲର୍ଡ ହାର୍ଡିଞ୍ଜ (୧୯୧୦—୧୯୧୬)

ପୂର୍ବେ କୁହାଯାଇଅଛି ଯେ, ବଙ୍ଗ ବିଚ୍ଛେଦ ନେଇ ବଙ୍ଗଳାରେ ଲୋକଙ୍କର ଅଶାନ୍ତି ହୋଇଥିଲା । ଫଳରେ ବଙ୍ଗଳାରେ କେତେକ ବଡ ବଡ

Digitized by srujanika@gmail.com


ଲର୍ଡ ହାର୍ଡିଞ୍ଜ

ନେତା ଦ୍ୱୀପାନ୍ତରିତ ହେଲେ, କେତେ ଫାଶି ପାଇଲେ । ବଡ଼ଲାଟ ଓ ଭାଇସରୟ ଲର୍ଡ ହାର୍ଡିଞ୍ଜଙ୍କୁ ମାରିବା ଲାଗି ବୋମା ଫିଙ୍ଗା ଯାଇଥିଲା ।

୧୯୧୧ ମସିହାରେ ସମ୍ରାଟ୍ ପଞ୍ଚମ ଜର୍ଜ ଓ ସମ୍ରାଜ୍ଞୀ ମେରି ଭାରତକୁ ଆସିଥିଲେ । ୧୯୧୧ ମସିହା ଡିସେମ୍ବର ୧୨ ତାରିଖରେ ଦିଲ୍ଲୀରେ ଏକ ଦରବାର ହେଲା । ସମ୍ରାଟଙ୍କ ଘୋଷଣା ଅନୁସାରେ ବଙ୍ଗଳାକୁ ଏକାଠି କରି ଗୋଟିଏ ପ୍ରଦେଶ କରାଗଲା । ବିହାର ଓଡ଼ିଶା ମିଶି ଗୋଟିଏ ପ୍ରଦେଶ ହେଲା । ଆସାମ ସ୍ୱତନ୍ତ୍ର ପ୍ରଦେଶ ହେଲା । ଭାରତର ରାଜଧାନୀ କଲିକତାଠାରୁ ଦିଲ୍ଲୀକୁ ଉଠିଗଲା ।

ହାର୍ଡିଞ୍ଜଙ୍କ ଅମଳରେ ପ୍ରଧାନ ଘଟଣା ଇଉରୋପର ମହାସମର ।

ଇଉରୋପୀୟ ମହାସମର—ଇଉରୋପରେ ଜର୍ମାନୀ ବୋଲି ଖଣ୍ଡିଏ ରାଜ୍ୟ ଅଛି । ସେଠାର ରାଜାଙ୍କୁ କାଇଜର କହନ୍ତି । ଜର୍ମାନ୍ ସମ୍ରାଟ୍ ଉଇଲିୟମ କାଇଜର ଭାରି ଯୋଦ୍ଧା ଓ ବୁଦ୍ଧିମାନ । ତାଙ୍କର ଇଚ୍ଛା ହେଲା, ସେ କିପରି ଇଉରୋପର ଅନ୍ୟାନ୍ୟ ରାଜାଙ୍କୁ ଯୁଦ୍ଧରେ ଜିଣି ବଡ ରାଜା ହେବେ । ଏହି ଇଚ୍ଛା ପୋଷି ସେ ଅନେକ ଦିନୁ ଯୁଦ୍ଧ କରିବା ଯୋଗାଡ଼ରେ ଥାନ୍ତି ଏବଂ ସୁଯୋଗ ଖୋଜି ବୁଲୁଥାନ୍ତି । ଦୈବାତ୍ ୧୯୧୪ ମସିହାରେ ଅଷ୍ଟ୍ରିୟା ଓ ସର୍ବିଆ ମଧ୍ୟରେ କଳି ଲାଗିଲା । ଜର୍ମାନୀର କାଇଜର ଅଷ୍ଟ୍ରିଆ ପକ୍ଷ ନେଲେ । ଫ୍ରାନ୍ସ ସର୍ବିଆ ପକ୍ଷ ନେଲା । କାଇଜର ବେଲଜିୟମ ରାଜ୍ୟର ମଧ୍ୟଦେଇ ଫ୍ରାନ୍ସ ଦେଶ ଆକ୍ରମଣ କରିବାକୁ ସୈନ୍ୟ ପଠାଇଲେ । ବେଲଜିୟମ୍ ରାଜ୍ୟ ଛାରଖାର

Digitized by srujanika@gmail.com

ହୋଇଗଲା । ଇଂରେଜ ବେଲଜିୟମ୍‌ର ବନ୍ଧୁ । ତେଣୁ ଇଂରେଜ ଅନ୍ୟ ପକ୍ଷ ନେଲେ । କ୍ରମେ କ୍ରମେ ଇଉରୋପର ଅନ୍ୟ ଦେଶ ସବୁ ଯୁଦ୍ଧରେ ଯୋଗ ଦେଲେ । ଏକ ପକ୍ଷେ ଜର୍ମାନୀ, ଅଷ୍ଟ୍ରିୟା, ତୁରସ୍କ, ବୁଲଗେରିଆ । ଅନ୍ୟ ପକ୍ଷରେ ବ୍ରିଟେନ୍, ଫ୍ରାନ୍‌ସ, ରୁଷିଆ, ଇଟାଲି, ବେଲଜିୟମ୍, ସର୍ବିଆ, ରୋମା-ନିଆ ଓ ମଣ୍ଟେନିଗ୍ରୋ । ଏ ଯୁଦ୍ଧ ଦୀର୍ଘ ଚାରି ବର୍ଷକାଳ ଚାଲିଲା । ଜଳରେ, ସ୍ଥଳରେ, ଉଡାଜାହାଜ ସାହାଯ୍ୟରେ ଆକାଶରେ, ବୁଡା ଜାହାଜ ସାହାଯ୍ୟରେ ପାଣି ଭିତରେ, ଖାଇ ତଳେ, ସୁଡଙ୍ଗ ଭିତରେ ଭୀଷଣ ଯୁଦ୍ଧ ହେଲା । ବ୍ରିଟେନରେ ୧୬ ବର୍ଷଠାରୁ ୫୦ ବର୍ଷ ପର୍ଯ୍ୟନ୍ତ ସବୁ ଲୋକ ଯୁଦ୍ଧ ଶିଖିଲେ । ପ୍ରଥମେ ପ୍ରଥମେ ଜର୍ମାନୀ ଜିଣିବ ବୋଲି ବୋଧ ହେଲା ।

ଭାରତର ସାହାଯ୍ୟ ଦାନ—ଏହି ସଙ୍କଟ ବେଳେ ଭାରତରୁ ଅସଂଖ୍ୟ ସୈନ୍ୟ ଫ୍ରାନ୍‌ସ ଓ ମେସୋପୋଟେମିଆ ପଠାଗଲେ । ପ୍ରଚୁର ଖାଦ୍ୟସାମଗ୍ରୀ ପଠାଗଲା । ରାଜା, ଜମିଦାର ଓ ଧନୀମାନେ ଅଜସ୍ର ଟଙ୍କା ଦାନ କଲେ । ଭାରତବାସୀ ଅନେକ ଟଙ୍କା ଯୁଦ୍ଧଋଣରୂପେ ଦେଲେ । ଯୁଦ୍ଧରେ ଭାରତ ସେନା ନିଜର ପରାକ୍ରମ ଦେଖାଇଥିଲେ ଓ ପୁରସ୍କାରସ୍ୱରୂପ ଅନେକ ଉପାଧି ଓ ପଦକ ପାଇଲେ ।

ଯୁଦ୍ଧ ଶେଷ—୧୯୧୮ରେ ଜର୍ମାନୀ ପକ୍ଷ ହଟିଗଲା । ଶେଷକୁ ଯୁଦ୍ଧ ବନ୍ଦ ହୋଇ ସନ୍ଧି ହେଲା । ଜର୍ମାନୀ କାଇଜର ସିଂହାସନ ଛାଡି ହଲଣ୍ଡ ପଳାଇଲେ । ଜର୍ମାନୀ ଯୁଦ୍ଧର କ୍ଷତିପୂରଣସ୍ୱରୂପ ବହୁତ ଟଙ୍କା ଦେବାକୁ ସ୍ୱୀକାର କଲା । ଏହି ଯୁଦ୍ଧରେ ଜର୍ମାନୀର ବହୁତ କ୍ଷତି ହୋଇଥିଲା ।

## ଲର୍ଡ଼ ଚେମ୍‌ସଫୋର୍ଡ଼ [୧୯୧୬–୧୯୨୦]—

ଚେମସ୍‌ଫୋର୍ଡଙ୍କ ଅମଳରେ ଭାରତ-ମନ୍ତ୍ରୀ ମଣ୍ଟେଗୁ ସାହେବ ୧୯୧୯ରେ ଭାରତ ଆସି ଭାରତବାସୀଙ୍କୁ ଶାସନ କାର୍ଯ୍ୟରେ କେତେ କ୍ଷମତା ଦେବାକୁ ବଡ-ଲାଟ୍ ଓ ଦେଶର ମୁଖିଆ ମୁଖିଆ ଲୋକଙ୍କ ସଙ୍ଗେ ପରାମର୍ଶ କଲେ । ଏହି ଶାସନ-ସଂସ୍କାରକୁ 'ମଣ୍ଟେଗୁ-ଚେମସ୍‌ଫୋର୍ଡ ଶାସନ-ସଂସ୍କାର' କହନ୍ତି । ସେହି ସଂସ୍କାର ଅନୁସାରେ ଏ ପର୍ଯ୍ୟନ୍ତ ଭାରତର ଶାସନ ଚାଲୁଛି । ପ୍ରତି ପ୍ରଦେଶରେ ଜଣେ ଜଣେ ଗଭର୍ଣ୍ଣର ବା ଲାଟ ରହିଲେ ।

Digitized by srujanika@gmail.com

ଲେଜିସ୍‌ଲେଟିଭ୍ କାଉନ୍‌ସିଲ ବା ପ୍ରାଦେଶିକ ଲଟସଭା—ଏହି ଆଇନ ବଳରେ ପ୍ରତି ପ୍ରଦେଶରେ ଲଟସଭା ବସିଲା । ସେଥିରେ ବେଶୀ ସଂଖ୍ୟାରେ ଭାରତୀୟ ରହୁଥିଲେ । ସେ ସଭାରେ ପ୍ରତି ପ୍ରଦେଶର ଦୁଃଖ ସୁବିଧା ଜଣାଇବା ପାଇଁ ଓ ଦେଶର ମଙ୍ଗଳ ଦୃଷ୍ଟିରେ ଆଇନ୍ ତିଆରି କରିବା ପାଇଁ ଲୋକେ ଭୋଟ ଦେଇ ପ୍ରତିନିଧି ପଠାଇଲେ । ଏହା ୧୯୨୧ ଠାରୁ କାର୍ଯ୍ୟରେ ପରିଣତ ହେଲା । ବେ-ସରକାରୀ ସଭ୍ୟଙ୍କ ମଧ୍ୟରୁ ଦୁଇ ଜଣ ମନ୍ତ୍ରୀ ରହୁଥିଲେ । ଆଇନକୁ କାର୍ଯ୍ୟରେ ପରିଣତ କରିବା ପାଇଁ ଗୋଟିଏ କାର୍ଯ୍ୟକାରିଣୀ ସଭା [ ଏକଜିକ୍ୟୁଟିଭ୍ କାଉନ୍‌ସିଲ ] ସ୍ଥାପିତ ହେଲା । ଏଥିରେ ମଧ୍ୟ ପ୍ରଜା ପକ୍ଷର ଲୋକ ରହୁଥିଲେ । ଆମ ବିହାର-ଓଡ଼ିଶା ପ୍ରଦେଶର ଏକଜିକ୍ୟୁଟିଭ୍ କାଉନ୍‌ସିଲର ଦୁଇ ଜଣ ମେମ୍ବରଙ୍କ ମଧ୍ୟରୁ କନିକା ରାଜା ଜଣେ ମେମ୍ବର ଥିଲେ ।



ମଣ୍ଟେଗୁ ସାହେବ

**ବଡ଼ଲାଟ ସଭା—**

ଲେଜିସଲେଟିଭ୍ ଆସେମ୍ବ୍ଲି—ସମଗ୍ର ଭାରତ ପାଇଁ ଆଇନ ଗଢ଼ିବା ପାଇଁ ଓ ଆୟବ୍ୟୟର ହିସାବ ଦେଖିବା ପାଇଁ ଗୋଟିଏ ସଭା ହେଲା । ତାହାକୁ ଲେଜିସ୍‌ଲେଟିଭ୍ ଆସେମ୍ବ୍ଲି କହନ୍ତି । ପ୍ରତି ପ୍ରଦେଶରୁ ପ୍ରଜାମାନେ ଭୋଟ ଦେଇ ଏ ସଭାକୁ ପ୍ରତିନିଧି ପଠାନ୍ତି ।

କାଉନ୍‌ସିଲ ଅବ୍ ଷ୍ଟେଟ୍—ଜମିଦାର ଓ ରାଜାମାନେ ଯେଉଁ ପ୍ରତିନିଧି ସବୁ ପଠାନ୍ତି, ସେମାନଙ୍କୁ ନେଇ କାଉନସିଲ ଅବ୍ ଷ୍ଟେଟ୍ ଗଠିତ । ଆସେମ୍ବ୍ଲି

Digitized by srujanika@gmail.com

ଯେଉଁ ଆଇନ ଗଢନ୍ତି, ତାହା ଏହି ସଭାରେ ପୁଣି ପଢ଼ ବସିବାର ହୁଏ । ସେଥିରେ ପାସ୍ ହେଲେ ଓ ସେଥିରେ ଆପତ୍ତି ନ କଲେ, ତାହା ଆଇନରେ ପରିଣତ ହୁଏ । ଏ ସଭାରେ ୭୦ ଜଣ ମେମ୍ବର ଥାନ୍ତି ।

ଏକଜିକ୍ୟୁଟିଭ୍ କାଉନ୍‌ସିଲ—ବଡ଼ଲାଟ ସଭାରେ ବା ଆସେମ୍ବ୍ଲିରେ ଯେଉଁ ଆଇନ ପାସ୍ ହୁଏ, ତାହାକୁ କାର୍ଯ୍ୟରେ ପରିଣତ କରିବା ପାଇଁ ଏକ୍‌ଜିକ୍ୟୁଟିଭ୍ କାଉନ୍‌ସିଲ୍ ଅଛି । ସେଥିରେ ୪ ଜଣ ସଭ୍ୟ ଅଛନ୍ତି । ସେଥି ମଧ୍ୟରୁ ୩ ଜଣ ବେ-ସରକାରୀ ସଭ୍ୟ ।

**ଲର୍ଡ ସତ୍ୟେନ୍ଦ୍ର ପ୍ରସନ୍ନ ସିଂହ—**

ନୂଆ ଶାସନ-ସଂସ୍କାର ଆଇନ ଅନୁସାରେ ଭାରତୀୟ ଲୋକେ ଦାୟିତ୍ୱ-ପୂର୍ଣ୍ଣ ଏକ ବଡ଼ ଚାକିରି ପାଇଲେ । ତା ଫଳରେ ଲର୍ଡ ସତ୍ୟେନ୍ଦ୍ରପ୍ରସନ୍ନ ସିଂହ ବାହାର-ଓଡ଼ିଶାର ପ୍ରଥମ ଲାଟ ହେଲେ । ଏହାଙ୍କ ଛଡ଼ା ଆଉ କୌଣସି ଭାରତୀୟ ଏ ପଦ ପାଇ ନାହାନ୍ତି ।

**ଲର୍ଡ ରିଡ଼ିଙ୍ଗ [ ୧୯୨୧—୧୯୨୬ ]—**



ସେ ଭାରତକୁ ଆସିବା ମାତ୍ରେ ସଙ୍ଗେ ଅସହଯୋଗ ଆନ୍ଦୋଳନ ଦବାଇବାକୁ ଚେଷ୍ଟା କଲେ । ମହାତ୍ମା ଗାନ୍ଧି ଓ ଦେଶର ବହୁସଂଖ୍ୟକ ବଡ଼-

Digitized by srujanika@gmail.com

ନଜ ଅସହଯୋଗୀ ନେତାଙ୍କୁ ଜେଲ୍ ଦିଆଗଲା । ଶେଷରେ ୧୯୨୪ରେ ସମସ୍ତ ଅସହଯୋଗୀଙ୍କୁ ମୁକ୍ତ କରି ଦିଆଗଲା । ଲର୍ଡ ରିଡିଙ୍ଗ୍ ଲୁଣକର କିଛି କମାଇ ଦେଇଥିଲେ । ତାଙ୍କ ଅମଳରେ ପ୍ରିନ୍ସ ଅଫ୍ ଓଏଲସ୍ ଭାରତକୁ ବୁଲି ଆସିଥିଲେ ।

**ଲର୍ଡ ଇର୍‌ୱିନ୍ (୧୯୨୬-୧୯୩୧)**



ଏହାଙ୍କ ଅମଳରେ ପାର୍ଲିଆମେଣ୍ଟ ସ୍ଥିର ଭାରତର ଶାସନ-ନୀତି ଦେଖି ଭାରତବାସୀଙ୍କୁ ଆଉ କ'ଣ ଅଧିକ କ୍ଷମତା ଦିଆଯିବ, ତଦନ୍ତ କରିବାକୁ ସାତ ଜଣ ବିଚକ୍ଷଣ ଶିକ୍ଷିତ ଲୋକଙ୍କୁ ଭାରତକୁ ପଠାଇଥିଲେ । ସାଇମନ ସାହେବ ସେ କମିଟିର ସଭାପତି ଥିଲେ । ତେଣୁ ସେ କମିଟିକୁ ସାଇମନ କମିସନ କହନ୍ତି । ସେମାନେ ତଦନ୍ତ କରି ଗୋଟିଏ ରିପୋର୍ଟ ଦେଇଥିଲେ । ସାଇମନ କମିସନର ରିପୋର୍ଟ ବିଚାର ପାଇଁ ଲଣ୍ଡନ ସହରରେ ଗୋଲଟେବୁଲ ବୈଠକ ବସିଲା । ଭାରତର ସବୁ ଦଳର ପ୍ରତିନିଧି-ମାନଙ୍କୁ ଏ ସଭାକୁ ନିମନ୍ତ୍ରଣ କରାଯାଇଥିଲା । ଇର୍‌ୱିନ୍ ବଡ଼ ଶାନ୍ତିପ୍ରିୟ ଓ ଉଦାର ପ୍ରକୃତିର ଲୋକ । ସେ ଭାରତର ମଙ୍ଗଳ ପାଇଁ ଅନେକ କାର୍ଯ୍ୟ କରିଥିଲେ ।

**ଲର୍ଡ ଓଏଲିଙ୍ଗ୍‌ଡନ୍—**



ଓଏଲିଙ୍ଗଡନ୍ ୧୯୩୧ରେ ଭାରତର ଭାଇସରୟ ହେଲେ । ତା ପୂର୍ବରୁ ସେ ମାନ୍ଦ୍ରାଜର ଗଭର୍ଣ୍ଣର ଥିଲେ । ଏହାଙ୍କ ଶାସନ ସମୟ ଭିତରେ ବିଲାତରେ ଦୁଇ ଥର ଗୋଲ୍‌ଟେବୁଲ ବୈଠକ ବସିଲା ।

---

Digitized by srujanika@gmail.com

# ଓଡ଼ିଶାରେ ଇଂରେଜ

ପୂର୍ବେ କୁହାଯାଇଅଛି, ଓଡ଼ିଶା ୧୮୦୩ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ନାଗପୁର ଭୋନ୍‌ସଲମାନଙ୍କ ଅଧୀନରେ ଥିଲା । ଇଂରେଜମାନେ ଆଗରୁ ଆସି ଓଡ଼ିଶାର କେତେକ ସ୍ଥାନରେ ବାଣିଜ୍ୟ କରୁଥିଲେ । ବାଲେଶ୍ୱର ସେମାନଙ୍କର ପ୍ରଧାନ ବାଣିଜ୍ୟ ସ୍ଥଳ ଥିଲା । କିନ୍ତୁ ମରହଟ୍ଟାମାନେ ସେମାନଙ୍କ ବାଣିଜ୍ୟରେ ବିଶେଷ ବାଧା ଦେଉଥିଲେ । ୧୮୦୩ରେ ଇଂରେଜମାନେ ସୈନ୍ୟ ନେଇ ପୁରୀରେ ପହଞ୍ଚିଲେ । ଚିଲିକା ହ୍ରଦ ଭିତରେ ମାଲୁଦ୍ ବୋଲି ଗୋଟିଏ କ୍ଷୁଦ୍ର ଦ୍ୱୀପ ଅଛି । ମାଲୁଦର ଫତେ ମହମ୍ମଦ ଇଂରେଜମାନଙ୍କୁ ବିଶେଷ ସାହାଯ୍ୟ ଦେଇଥିଲେ । ମରହଟ୍ଟାମାନେ ଇଂରେଜ ମାନଙ୍କ ସଙ୍ଗେ ଲଢେଇ ନ କରି ଲୁଚିଲେ । ଇଂରେଜମାନେ ଅତି ସହଜରେ ପୁରୀ ଆକ୍ରମଣ କଲେ । ତାହା ପରେ ସେମାନେ ଫତେ ମହମ୍ମଦଙ୍କୁ ନେଇ କଟକ ଆଡେ ଆସିଲେ । କଟକ ଆକ୍ରମଣବେଳେ ମରହଟ୍ଟାମାନେ ବାରବାଟୀ ଦୁର୍ଗରେ ଥିଲେ । ଯେତେବେଳେ ଯୁଦ୍ଧ ହେଲା, ମରହଟ୍ଟାମାନେ ଦୁର୍ଗ ଛାଡ଼ି ପଳାଇଗଲେ । ଆଉ ଦଳେ ଇଂରେଜ ସୈନ୍ୟ କଲିକତାରୁ ଆସି ବାଲେଶ୍ୱର ଜିଲ୍ଲା ଦଖଲ କରି କଟକ ଆଡକୁ ଆସିଲେ । ଅଳ୍ପ ସମୟ ମଧ୍ୟରେ ଓ ସହଜରେ କଟକ, ପୁରୀ, ବାଲେଶ୍ୱର ଇଂରେଜମାନଙ୍କ ଦଖଲକୁ ଆସିଲା ।

ଖୋରଧା ଖାସ—ଖୋରଧାରେ ପୁରୀର ଜଗନ୍ନାଥ ମହାପ୍ରଭୁଙ୍କର କେତେକ ସମ୍ପତ୍ତି ଖୋରଧା ରାଜାଙ୍କ ମାରଫତରେ ଥିଲା । ଇଂରେଜମାନେ ରାଜାଙ୍କଠାରୁ ସେ ଜମିତକ ନେଇ ତାହାର କର ଆଦାୟ ଭାର ଦଳେ ସିପାହୀଙ୍କ ହାତରେ ଦେଲେ । ସେତେବେଳେ ଭୋଇ ବଂଶର ରାଜା ମୁକୁନ୍ଦ ଦେବ ଖୋରଧାରେ ରାଜତ୍ୱ କରୁଥାନ୍ତି । ସେ ଇଂରେଜ ସରକାରଙ୍କ ବିରୁଦ୍ଧରେ ବିଦ୍ରୋହ କଲେ । ମୁକୁନ୍ଦ ଦେବ ଧରାପଡ଼ି ବନ୍ଦୀ ହେଲେ । ତାଙ୍କ ମନ୍ତ୍ରୀ ଫାଶୀ ପାଇଲେ । ଖୋରଧା ଖାସ କରି ଦିଆଗଲା । ସେହି ଦିନଠାରୁ ଇଂରେଜ ସରକାର ଖୋରଧାର ଖୋଦ୍ ଜମିଦାର ହେଲେ । କିଛି ଦିନ ଉତ୍ତାରୁ ସରକାର ମୁକୁନ୍ଦ ଦେବଙ୍କୁ ଖଲାସ କରି ଦେଇ ପୁରୀରେ ଜଗନ୍ନାଥଙ୍କ

Digitized by srujanika@gmail.com

ସମ୍ପତ୍ତିରେ ମାଲିକ କରି ରଖିଲେ ଓ ତାଙ୍କ ପାଇଁ ମାସିକ ବୃତ୍ତି ଖଞ୍ଜିଦେଲେ । ଖୋରଧାରେ ଥିବା ୬୭ ହଜାର ଜମି ମଧ୍ୟ ତାଙ୍କୁ ଛାଡ଼ିଦେଲେ । ସେହି ଦିନଠାରୁ ଏହି ଭୋଇ ବଂଶର ରାଜାମାନେ ଜଗନ୍ନାଥଙ୍କର ସମ୍ପତ୍ତି ବୁଝାଶୁଝା କରୁଛନ୍ତି । ସେମାନେ ଉତ୍କଳରେ ଠାକୁରରାଜା ନାମରେ ପରିଚିତ । ଓଡ଼ିଶାର ଗଡ଼ଜାତ ରାଜ୍ୟମାନ ତାଙ୍କ ଅଧୀନରେ ନ ଥିଲେ ମଧ୍ୟ ସେଠାର ଓ ଭାରତରେ ଥିବା ଅନ୍ୟାନ୍ୟ ହିନ୍ଦୁ ରାଜାମାନେ ଆଜ ପର୍ଯ୍ୟନ୍ତ ସେମାନଙ୍କୁ ଠାକୁର ରାଜା ବୋଲି ମାନି ଆସିଛନ୍ତି । ସେମାନେ ଠାକୁର-ରାଜାମାନଙ୍କୁ ଭକ୍ତି କରନ୍ତି ଓ ସମ୍ମାନ ଦେଖାନ୍ତି । ବର୍ତ୍ତମାନ ଶ୍ରୀ ରାମଚନ୍ଦ୍ର ଦେବ ଠାକୁର-ରାଜା ଅଛନ୍ତି ।

ଖୋରଧାରେ ପାଇକବିଦ୍ରୋହ—ଖୋରଧା ଖାସ୍ ହୋଇଯିବାରୁ ଖୋରଧାର ପାଇକମାନେ ଇଂରେଜ ସରକାରଙ୍କ ଉପରେ ଅସନ୍ତୁଷ୍ଟ ହୋଇ-ଥିଲେ । ସେହି ସମୟରେ କଡ଼ାକଡ଼ି କରି ଖଜଣା ଆଦାୟ କରାଗଲା । ଲୁଣ ଉପରେ ଟିକସ ବସିଲା । ଏହି ସବୁ କାରଣରୁ ପାଇକମାନେ ୧୮୧୭ ମସିହାରେ ବିଦ୍ରୋହୀ ହୋଇଉଠିଲେ । ଖଜଣାଖାନା ଲୁଟି କଲେ । ଘରଆଡ଼େ ଉତ୍ପାତ କଲେ । ବିଦ୍ରୋହ ଦବାଇବା ପାଇଁ କଟକରୁ ଓ ଗଞ୍ଜାମରୁ ସୈନ୍ୟ ପଠାଗଲା । କେତେ ପାଇକଙ୍କୁ ଧରି ଦଣ୍ଡ ଦିଆଗଲା । କେତେକେ ବନ୍ଦୀ ହୋଇ ରହିଲେ । କେତେକ ଦ୍ୱୀପାନ୍ତରିତ ହେଲେ । ଆଉ କେତେକେ ଫାସି ପାଇଲେ ।

ବାଙ୍କି ଖାସ୍—ବାଙ୍କିର ରାଜା ଜଣେ ମଜାର ସମସ୍ତ ଲୁଟିମ୍ଭଙ୍କୁ ମାରି ଦେଇଥିବାରୁ ଇଂରେଜ ସରକାର ୧୮୪୦ରେ ରାଜାଙ୍କ ହାତରୁ ବାଙ୍କି ଛଡ଼ାଇ ନେଲେ । ବାଙ୍କି ସେହି ଦିନଠାରୁ ଖାସ୍ ହେଲା । ରାଜା ବନ୍ଦୀ ହୋଇ ରହିଲେ ।

ଅନୁଗୁଳ ଖାସ—୧୮୪୭ରେ ଅନୁଗୁଳର ରାଜା ଇଂରେଜ ସରକାରଙ୍କ ବିରୁଦ୍ଧରେ ଉଠିବାରୁ ତାଙ୍କୁ ରାଜ୍ୟରୁ ତଡ଼ି ଦିଆଗଲା । ଅନୁଗୁଳ ଖାସ୍ ହେଲା ।

କନ୍ଧମାଳ—ବୌଦ୍ଧ ରାଜା କନ୍ଧମାଳକୁ ଭଲରୂପେ ଶାସନ କରି ନ ପାରି ସରକାରଙ୍କୁ ଦେଇଦେଲେ ।

Digitized by srujanika@gmail.com

ସମ୍ବଲପୁର—୧୮୨୭ ପର୍ଯ୍ୟନ୍ତ ସମ୍ବଲପୁର ମରହଟ୍ଟା ଶାସନ ଅଧୀନରେ ଥିଲା । ସେଠାରେ ଜଣେ ଛତିସ୍ଥ ରାଜା ଥିଲେ । ୧୮୨୭ରେ ଭୋନ୍‌ସଲାଙ୍କ ସଙ୍ଗେ ସନ୍ଧି ସର୍ତ୍ତରେ ଇଂରେଜ ସରକାର ସମ୍ବଲପୁର ପାଇଲେ । ୧୮୪୯ ପର୍ଯ୍ୟନ୍ତ ସେହି ଛତିସ୍ଥ ରାଜା ଇଂରେଜଙ୍କ ଅଧୀନରେ ରାଜତ୍ୱ କରୁଥିଲେ । ସେ ମରିଗଲେ । ତାଙ୍କର ପୁଅ ନ ଥିବାରୁ ଡେଲହାଉସି ସମ୍ବଲପୁରକୁ ଖାସ୍ କରି ନିଜ ରାଜ୍ୟରେ ମିଶାଇଦେଲେ । ପ୍ରଥମେ ସମ୍ବଲପୁର ଛୋଟନାଗପୁର ସଙ୍ଗେ କିଛି ଦିନ ରହିଲା; ତା ପରେ ମଧ୍ୟପ୍ରଦେଶ ସଙ୍ଗେ ରହିଲା । ୧୯୦୫ରେ ଲର୍ଡ଼ କର୍ଜନ ତାକୁ ଓଡ଼ିଶା ସଙ୍ଗେ ମିଶାଇଲେ ।

## ଓଡ଼ିଶାର ଗଡ଼ଜାତ ରାଜ୍ୟ ଶାସନ—

ତୁମ୍ଭେମାନେ ଆଗରୁ ଜାଣିଛ, ଓଡ଼ିଶାରେ ୨୪ ଗଡ଼ଜାତ । ପ୍ରତ୍ୟେକ ରାଜ୍ୟର ଆୟତନ ସମାନ ନୁହେଁ । ସେମାନଙ୍କ ମଧ୍ୟରେ ମୟୂରଭଞ୍ଜର ଆୟତନ ସବୁଠାରୁ ବଡ଼; ତିଗିରିଆର ଆୟତନ ସବୁଠାରୁ ଛୋଟ । ପ୍ରତ୍ୟେକ ରାଜ୍ୟରେ ଜଣେ ଜଣେ ରାଜା ଅଛନ୍ତି । ଇଂରେଜମାନେ ଓଡ଼ିଶା ଦଖଲ କଲା ପରେ ଏହି ଗଡ଼ଜାତ ରାଜାମାନେ ଇଂରେଜ ସରକାରଙ୍କର ବଶ୍ୟତା ସ୍ୱୀକାର କରି ସରକାରଙ୍କୁ ସାମାନ୍ୟ କିଛି କିଛି ବାର୍ଷିକ ପେସକସ୍ ଦେଉଥିଲେ । ଏ ପର୍ଯ୍ୟନ୍ତ ସରକାର ଏ ୨୪ ଗଡ଼ଜାତ ରାଜାମାନଙ୍କର କାର୍ଯ୍ୟକଳାପ ଦେଖିବା ନିମନ୍ତେ ଜଣେ ପୋଲିଟିକାଲ୍ ଏଜେଣ୍ଟ ରଖିଥିଲେ । ତାଙ୍କର ଅଫିସ ସମ୍ବଲପୁରଠାରେ ଥିଲା । ରାଜାମାନଙ୍କର ନାଗର ବାରୁଦ୍ଧରେ ପ୍ରଜାମାନେ ସମ୍ବଲପୁରର ପୋଲିଟିକାଲ ଏଜେଣ୍ଟଙ୍କ ପାଖେ ଅପିଲ କରିପାରୁଥିଲେ । ପୋଲିଟିକାଲ ଏଜେଣ୍ଟଙ୍କ ଉପରକୁ ଓଡ଼ିଶା ବିଭାଗରେ କମିସନର ଥିଲେ । ୧୯୨୪ ଠାରୁ କମିସନର ଗଡ଼ଜାତମାନଙ୍କର କମିସନର ନ ହୋଇ ନିଜେ ପୋଲିଟିକାଲ ଏଜେଣ୍ଟ କମିସନର ମଧ୍ୟ ହେଲେ । ଏବେ ଓଡ଼ିଶାର ଗଡ଼ଜାତମାନ ପ୍ରାଦେଶିକ ସରକାରଙ୍କ ଅଧୀନରେ ନ ରହି ଗଭର୍ଣ୍ଣର ଜେନେରେଲ ବା ଭାଇସରୟ ବା ଭାରତ-ସରକାରଙ୍କ ଶାସନ ଅଧୀନରେ ରହିଲେ ।

Digitized by srujanika@gmail.com

## ମୁନସିପାଲ୍‌ଟି—

ଲର୍ଡ ରିପନଙ୍କ ଅମଳରେ ସହରମାନଙ୍କରେ ମୁନସିପାଲ୍‌ଟି ସବୁ ବସିଲା । ଯେଉଁ ସହରମାନଙ୍କରେ ଲୋକସଂଖ୍ୟା ପାଞ୍ଚ ହଜାରରୁ ବେଶୀ, ସେହି ସହରମାନଙ୍କରେ ମୁନସିପାଲ୍‌ଟି ବସେ ।

କାର୍ଯ୍ୟ—[୧] ସହରର ରାସ୍ତା ତିଆରି କରିବା ଓ ମରାମତି କରିବା, ରାସ୍ତା ଦୁଇପଟେ ପାଣି ଯିବା ପାଇଁ ନାଳ ଖୋଳିବା, ରାସ୍ତାରେ ପୋଲ ଓ ଘାଟ ତିଆରି କରିବା, [୨] ସହରରେ ବାଳକ ବାଳିକାଙ୍କ ପାଇଁ ସ୍କୁଲ ବସାଇ ଚଳାଇବା, [୩] ସହରର ଲୋକଙ୍କର କପରି ସ୍ୱାସ୍ଥ୍ୟ ଭଲ ରହିବ, ସେଥିପ୍ରତି ନଜର ରଖିବାକୁ ଡାକ୍ତର ରଖିବା ଓ ଡାକ୍ତରଖାନାରୁ ଔଷଧ ଆଣି ବାଣ୍ଟିବା, [୪] ପାଇଖାନା ଓ ରାସ୍ତା ମେହେନ୍ତରଙ୍କ ଦ୍ୱାରା ସଫା କରାଇବା ଓ [୫] ରାସ୍ତାରେ ରାତିରେ ଆଲୁଅ ଦେବା ମୁନସିପାଲ୍‌ଟିର ପ୍ରଧାନ କାର୍ଯ୍ୟ ଅଟେ ।

ଆୟ—ସହରରେ ଯେଉଁମାନଙ୍କର ଘର ଅଛି, ସେମାନେ ମୁନସିପାଲ୍‌ଟିକୁ ଘର ଟିକସ ଓ ପାଇଖାନା ଟିକସ ଦିଅନ୍ତି । ଏହା ମୁନସିପାଲ୍‌ଟିର ପ୍ରଧାନ ଆୟ । ସହରରେ ଯେତେ ମୋଟର, ଘୋଡାଗାଡି, ବଳଦଗାଡି ଚଳେ, ସେମାନଙ୍କଠାରୁ ଟିକସ ଆଦାୟ ହୁଏ । ସହର ନିକଟରେ ଥିବା ଘାଟସବୁ ନିଲାମ ହୁଏ । ସହର ଭିତରେ ଥିବା କାଇନ୍ ହାଉସ ପଇସା ଦିଆଯାଏ । ଏ ଆୟ ଛଡା ସରକାର ସହରର ଉନ୍ନତିପାଇଁ କିଛି କିଛି ଟଙ୍କା ଦିଅନ୍ତି ।

ମୁନସିପାଲ୍‌ଟି ସଭା—ସହରରେ ଶିକ୍ଷା, ସ୍ୱାସ୍ଥ୍ୟ, ଆଲୁଅ, ସଡକ ତିଆରି ବୁଝାବୁଝି କରିବା ପାଇଁ ଗୋଟିଏ ସଭା ଅଛି, ତାହାକୁ ମୁନସିପାଲ୍‌ଟି ସଭା କହନ୍ତି । କଲିକତା, ବୋମ୍ବେ ପରି ସହରମାନଙ୍କରେ ଥିବା ମୁନସିପାଲ୍‌ଟିର ନାମ କର୍ପୋରେସନ । ଏହି ସଭାର ମେମ୍ବରମାନଙ୍କୁ କମିସନର କହନ୍ତି । ଲୋକସଂଖ୍ୟା ଓ ଆକାର ଅନୁସାରେ ସହରକୁ କେତେଗୁଡିଏ ଭାଗରେ ବିଭକ୍ତ କରାଯାଇଅଛି । ପ୍ରତ୍ୟେକ ଭାଗକୁ ଉଆର୍ଡ କହନ୍ତି । ସବୁ ଉଆର୍ଡରୁ ସଭ୍ୟ ଏ ସଭାକୁ ଆସନ୍ତି । ମେମ୍ବରମାନେ ଆପଣା ଆପଣା ମଧ୍ୟରେ ସଭାପତି

ଚେୟାରମାନ, ଭାଇସ-ଚେୟାରମାନ ଦାଅନ୍ତି । ଏମାନେ କେହି ବେତନ ପାଆନ୍ତି ନାହିଁ । ମେମ୍ବରମାନଙ୍କ ପରାମର୍ଶ ଅନୁସାରେ କାର୍ଯ୍ୟ ହୁଏ ।

## ଡିଷ୍ଟ୍ରିକ୍ଟ ବୋର୍ଡ ବା ଜିଲାବୋର୍ଡ—

ତୁମ୍ଭେମାନେ ଆଗରୁ ପଢିଛ, ଲର୍ଡ ରିପନଙ୍କ ଅମଳରେ ପ୍ରତି ଜିଲାରେ ଡିଷ୍ଟ୍ରିକ୍ଟ ବୋର୍ଡ ବସିଲା । ଭାରତବାସୀ ନିଜକୁ ନିଜେ ଶାସନ କରି ଶିଖିବେ, ଏହି ଉଦ୍ଦେଶ୍ୟରେ ରିପନ କେତେଗୁଡ଼ିଏ କାର୍ଯ୍ୟର ଭାର ଲୋକମାନଙ୍କ ହାତରେ ଛାଡିଦେଇଥିଲେ ।

ବୋର୍ଡର କାର୍ଯ୍ୟ [୧]—ଶିକ୍ଷା—ସହର ଛଡା ମଫସଲରେ ଯେଉଁ ମାଇନର ସ୍କୁଲ, ଉଚ୍ଚ ପ୍ରାଥମିକ ସ୍କୁଲ, ନିମ୍ନ ପ୍ରାଥମିକ ସ୍କୁଲମାନ ଅଛି, ଜିଲାବୋର୍ଡ ତାହାର ଖବର ଅନ୍ତର ବୁଝନ୍ତି, ଅଳ୍ପ ବହୁତରେ ଅର୍ଥ ସାହାଯ୍ୟ ଦିଅନ୍ତି । ମାନ୍ଦ୍ରାଜ ପ୍ରଦେଶରେ ହାଇ ସ୍କୁଲ ଖବର ମଧ୍ୟ ଜିଲାବୋର୍ଡ ବୁଝେ । [୨] ଜିଲାବୋର୍ଡ ଜିଲା ମଧ୍ୟରେ ଥିବା ପୁରୁଣା ସଡକ ମରାମତି କରନ୍ତି ଓ ନୂଆ ନୂଆ ସଡକ ତିଆରି କରନ୍ତି । ନଈ ନାଳ ଉପରେ ପୋଲ ତିଆରି କରନ୍ତି । ପାଣି ଅଭାବ ସ୍ଥାନରେ କୂଅ, ପୋଖରୀ ଖୋଳାନ୍ତି । [୩] ଭିନ୍ନ ଭିନ୍ନ ସ୍ଥାନରେ ଡାକ୍ତରଖାନା ଓ କବିରାଜୀ ଔଷଧାଳୟମାନ ଖୋଲି ଲୋକଙ୍କୁ ଔଷଧ ବାଣ୍ଟନ୍ତି ଓ ବିନା ପଇସାରେ ରୋଗୀମାନଙ୍କର ଚିକିତ୍ସା କରନ୍ତି । ଜିଲା ଭିତରେ କେଉଁଠି ହଇଜା, ବସନ୍ତ ଓ ମେଲେରିଆ ହେଲେ ସେଠାକୁ ଡାକ୍ତର, କମ୍ପାଉଣ୍ଡର ପଠାଇ ରୋଗ ଯେପରି କମିଯିବ, ତାର ବ୍ୟବସ୍ଥା କରନ୍ତି ।

ବୋର୍ଡର ଆୟ—[୧] ସରକାର ପ୍ରଜାଙ୍କଠାରୁ ଜମିର ଖଜଣା ସଙ୍ଗେ ସଙ୍ଗେ ପଥକର ଆଦାୟ କରନ୍ତି । ସମୁଦାୟ ପଥକର ଟଙ୍କା ସରକାର ଜିଲାବୋର୍ଡ ହାତରେ ଦିଅନ୍ତି । [୨] ଜିଲା ଭିତରେ ଅନେକ ନଈ ଘାଟ ବୋର୍ଡ ଅଧୀନରେ ଅଛି । ସେ ଘାଟସବୁ ତିନିବର୍ଷ ପାଇଁ ଇଜାରା ଦିଆଯାଏ । ସେଥିରୁ କିଛି ଟଙ୍କା ଆୟ ହୁଏ । [୩] ଭିନ୍ନ ଭିନ୍ନ ସ୍ଥାନରେ ଯେଉଁସବୁ କାଇନ୍ ହାଉସ [କାଞ୍ଜି ହାଉସ] ଅଛି, ସେ ସବୁ ନିଲାମ

Digitized by srujanika@gmail.com

କରାଯାଏ । [ ୪ ] ବୋର୍ଡ଼ର ସଡ଼କ ଧାରରେ ଦୋକାନ କରିବା ପାଇଁ ଜମି ପଟ୍ଟା ଦିଆଯାଏ । [୫] ଏ ସବୁ ଅଯୁ ଛଡ଼ା ସରକାର ସ୍ୱାସ୍ଥ୍ୟ, ଶିକ୍ଷା, ସଡ଼କ, ପୋଖରୀ ଓ କୂଅ ଖୋଳା ପାଇଁ ବୋର୍ଡ ହାତକୁ କିଛି କିଛି ଟଙ୍କା ଦିଅନ୍ତି ।

ବୋର୍ଡ଼ର ସଭ୍ୟ ଓ ସଙ୍ଖ୍—୧୯୬୧ ମସିହା [ପୂର୍ବରୁ ସରକାର ନିଜେ ଲୋକଙ୍କ ଭିତରୁ ବୋର୍ଡ଼ର ମେମ୍ବର ବାଛୁଥିଲେ । ପ୍ରଜାମାନେ ଏବେ ପ୍ରତି ଥାନାରୁ ଆପଣା ଭିତର ଲୋକଙ୍କୁ ଭୋଟ ଦେଇ ବୋର୍ଡ଼କୁ ପଠାନ୍ତି । ବୋର୍ଡ ତିନି ବର୍ଷ ପରେ ପୁଣି ଗଢ଼ା ହୁଏ । ଏହି ମେମ୍ବରଙ୍କ ଛଡ଼ା ସରକାର କେତେ ଜଣଙ୍କୁ ବୋର୍ଡ଼କୁ ପଠାନ୍ତି । ସେମାନଙ୍କ ସଂଖ୍ୟା ଖୁବ୍ କମ୍ । ମେମ୍ବରମାନେ ବଛା ସରିଲେ ସେମାନେ ପ୍ରଥମେ ବୈଠକ କରି ଆପଣା ଭିତରୁ ଚେୟାରମାନ ଓ ଭାଇସ୍ ଚେୟାରମାନ୍ ବାଛନ୍ତି । ଏମାନେ କେହି ଦରମା ପାଇ କାମ କରନ୍ତି ନାହିଁ । କେବଳ ଗସ୍ତଖର୍ଚ୍ଚା ପାଆନ୍ତି । ଲୋକସଂଖ୍ୟା କମ୍ ବେଶୀ ନେଇ ଭିନ୍ନ ଭିନ୍ନ ଜିଲ୍ଲାବୋର୍ଡରେ ମେମ୍ବର ବା ସଭ୍ୟସଂଖ୍ୟା କମ୍ ବା ବେଶୀ ଥାଏ ।

## ଲୋକେଲ୍ ବୋର୍ଡ୍ ବା ତାଲୁକ ବୋର୍ଡ୍—

ପ୍ରତି ଜିଲ୍ଲା କେତେଗୁଡ଼ିଏ ସବ୍‌ଡିଭିଜନରେ ବିଭକ୍ତ । ପ୍ରତି ସବ୍-ଡିଭିଜନ୍‌ରେ ଜିଲ୍ଲାବୋର୍ଡ ପରି ଗୋଟିଏ ଗୋଟିଏ ସଙ୍ଘ ଅଛି । ତାହାକୁ ଲୋକେଲ ବୋର୍ଡ ବା ତାଲୁକ ବୋର୍ଡ କହନ୍ତି । ଏହି ବୋର୍ଡମାନ ଜିଲ୍ଲା ବୋର୍ଡ ଅଧୀନ । ଜିଲ୍ଲା ବୋର୍ଡ ବଡ ବଡ କାମ ସବୁ ନିଜେ ମୁଣ୍ଡାଇ ଛୋଟ ଛୋଟ କାମ ସବୁ ଲୋକେଲ୍ ବୋର୍ଡ ହାତରେ ଦିଏ । ନିମ୍ନ ପ୍ରାଥମିକ ଓ କେତେକ ଉଚ୍ଚ ପ୍ରାଥମିକ ସ୍କୁଲର ବୁଝାଶୁଝା, କାଇନ୍ ହାଉସ ଓ ଛୋଟ ଛୋଟ ଘାଟର ନିଲାମ ଓ ବୁଝାଶୁଝା, ରାସ୍ତା ଓ କେତେକ କୂଅପୋଖରୀ ଖୋଳା କାମ ଲୋକେଲ ବୋର୍ଡକୁ ଦିଆଯାଏ । ଲୋକେଲ ବୋର୍ଡର ନିଜର ଅଯୁ କିଛି ନାହିଁ । ଜିଲ୍ଲାବୋର୍ଡରୁ ଟଙ୍କା ଆଣି କାମ କରେ ।

ସଭ୍ୟ—ପ୍ରତି ସବଡିଭିଜନରୁ ଯେଉଁମାନେ ଜିଲ୍ଲା ବୋର୍ଡ ମେମ୍ବର ହୁଅନ୍ତି, ସେହିମାନେ ଏହି ଲୋକେଲ ବୋର୍ଡମାନଙ୍କରେ ମଧ୍ୟ ମେମ୍ବର

Digitized by srujanika@gmail.com

ହୁଅନ୍ତି । ତାହା ଛଡା ପ୍ରତି ସବଡିଭିଜନର ଲୋକେଲ ବୋର୍ଡ ପାଇଁ ସେହି ସବଡିଭିଜନରୁ ଅଳ୍ପ କେତେ ଜଣ ମେମ୍ବର ମନୋନୀତ ହୁଅନ୍ତି । ଏହି ବୋର୍ଡର ମେମ୍ବର ବଛା ସରିଲେ ସେମାନେ ବୈଠକ କରି ଆପଣା ଭିତରୁ ଚେୟାରମାନ ଓ ଭାଇସ୍-ଚେୟାରମାନ୍ ବାଛନ୍ତି ।

## ସମବାୟ ସମିତି—

ଆମ ଦେଶର କୃଷୀମାନେ ଅନେକ ସମୟରେ ମୂଳଧନ ଅଭାବରେ ଜମିରେ ଭଲ ଫସଲ ଉଠାଇ ପାରନ୍ତି ନାହିଁ । ମହାଜନମାନଙ୍କଠାରୁ ଟଙ୍କା କରଜ ଆଣିଲେ ଏତେ ସୁଧ ଦେବାକୁ ପଡେ ଯେ, ଶେଷରେ ଜମି ଖଣ୍ଡିକ ବିକିବାକୁ ପଡେ । ଏହି ଗରିବ କୃଷୀଙ୍କ ଅବସ୍ଥା ଭଲ କରିବା ପାଇଁ, କୃଷିର ଉନ୍ନତି କରିବା ପାଇଁ ଲର୍ଡ କର୍ଜନ ଭାରତରେ ପ୍ରଥମେ କୋ-ଅପରେଟିଭ ବ୍ୟାଙ୍କ୍ ବା ସମବାୟ ସମିତି ବସାଇଥିଲେ । ଏହି ସମିତିର ପ୍ରଥମ କାମ ହେଲା, କୃଷିର ଉନ୍ନତି ପାଇଁ କୃଷୀମାନଙ୍କୁ ଅଳ୍ପ ସୁଧରେ ଟଙ୍କା କରଜ ଦେବା ।

୧୯୦୪ରେ ଭାରତରେ ପ୍ରଥମେ ଏହା ଆରମ୍ଭ ହୁଏ । ଲୋକଙ୍କୁ ଅଳ୍ପ ସୁଧରେ ଟଙ୍କା କରଜ ଦେବା ଏହି ସମିତିର ଏକମାତ୍ର କାମ ନୁହେଁ । ପାଞ୍ଚ ଜଣ ମିଳିମିଶି ନିଜ ନିଜ ଗାଁ କିପରି ପରିଷ୍କାର ପରିଚ୍ଛନ୍ନ ରଖିବେ, ଗାଆଁରେ ଇସ୍କୁଲ ବସାଇ ଗାଆଁ ଲୋକଙ୍କୁ ଶିକ୍ଷା ଦେବେ, ଗାଆଁଗଡ଼ିଆରେ ଥିବା ମଇଳା ସଫା କରି କୌଣସି ରୋଗ ପୂରିଇ ଦେବେ ନାହିଁ, ନାନାରକମର ଫସଲ କରାଇବେ, ଏହିପରି ନାନା ହିତକର କାମ କରିବାକୁ ଶିଖାଇବା ସମିତିର ଉଦ୍ଦେଶ୍ୟ ।

ଏହି ବିଭାଗ ବୁଝିବା ଲାଗି ପ୍ରତି ପ୍ରଦେଶରେ ଜଣେ ଲେଖାଏଁ ବଡ କର୍ମଚାରୀ ଅଛନ୍ତି । ତାଙ୍କୁ ରେଜିଷ୍ଟ୍ରାର କହନ୍ତି । ସେ ସରକାରରୁ ଦରମା ପାନ୍ତି । ତାଙ୍କ ଅଧୀନରେ ସହକାରୀ-ରେଜିଷ୍ଟ୍ରାରମାନେ ଅଛନ୍ତି । ସେମାନଙ୍କ ଅଧୀନରେ ମେନେଜର, ଇନ୍‌ସ୍ପେକ୍ଟର ଓ କରାନୀ ଅଛନ୍ତି । ବଡ ବଡ ସହରମାନଙ୍କରେ ସମବାୟ କେନ୍ଦ୍ର ସମିତି [ Central Co-operative Bank ] ଅଛି । ତାହା ତଳେ ଗ୍ରାମ-ସମବାୟ-ସମିତିମାନ

Digitized by srujanika@gmail.com

[ Village Society ] ଅଛି । ସହରରେ ବା ଗାଁରେ ଦଶ ଜଣ ଲୋକ ମିଶି ଗୋଟିଏ ସମିତି ଗଢ଼ିପାରିବେ । ସମିତି ବସାଇବାକୁ ହେଲେ ସେମାନେ କେନ୍ଦ୍ର ସମିତିକୁ ଦରଖାସ୍ତ କରନ୍ତି । କର୍ମଚାରୀମାନେ ଆସି ସେ ଲୋକଙ୍କ ଅବସ୍ଥା ତଦନ୍ତ କରି ଅନୁମତି ଦିଅନ୍ତି । ଗ୍ରାମ-ସମିତିର ସଭ୍ୟମାନେ କିଛି କିଛି ଟଙ୍କା ଜମା ରଖନ୍ତି । କେନ୍ଦ୍ର ସମିତି ଗ୍ରାମ-ସମିତିକୁ କରଜ ଦିଏ । କେନ୍ଦ୍ର ସମିତି ଗ୍ରାମ-ସମିତିଠାରୁ ଯେତେ ସୁଧ ନିଅନ୍ତି, ଗ୍ରାମ-ସମିତି ତାଠାରୁ ଅଳ୍ପ ବେଶୀ ସୁଧରେ କରଜ ଦିଅନ୍ତି । ସେ ବଳକା ସୁଧ ଗ୍ରାମ-ସମିତିର ଧନ । ତାହା ବଳି ବଳି ବେଶୀ ଟଙ୍କା ହେଲେ ଗ୍ରାମ-ସମିତି କେନ୍ଦ୍ର ସମିତିର କରଜ ଶୁଝି ଦେଇ ନିଜେ ନିଜେ ଚଳେ । ଋଣ ନେଇଥିବା କୌଣସି ଲୋକ ଟଙ୍କା ଶୁଝି ନ ପାରିଲେ ଯେଣୁ ସମିତିର ସମସ୍ତ ମେମ୍ବର ସେ ଟଙ୍କା ପାଇଁ ଦାୟୀ ହୁଅନ୍ତି । ସେମାନେ ସେ ଲୋକର ସମ୍ପତ୍ତି ନିଲାମ କରି ନିଜ ନିଜ ଟଙ୍କା ଆଦାୟ କରିନିଅନ୍ତି ।

ବ୍ୟାଙ୍କ କର୍ମଚାରୀ, ଇନ୍‌ସ୍‌ପେକ୍‌ଟର, ମେନେଜର ପ୍ରଭୃତି ସମିତିମାନଙ୍କର କାର୍ଯ୍ୟ ମଝିରେ ମଝିରେ ଆସି ଦେଖନ୍ତି ଓ ସେମାନଙ୍କଠାରୁ ଟଙ୍କା ଆଦାୟ କରନ୍ତି । ସମିତିର କାର୍ଯ୍ୟ ଭଲ ନ ଚଳିଲେ ସମିତିକୁ ଭାଙ୍ଗି ଦିଆଯାଏ ।

ଏହି ସହଯୋଗ ସମିତି ଆରମ୍ଭ ହେଲାରୁ ମହାଜନମାନଙ୍କ ଦୌରାତ୍ମ୍ୟ କମିଗଲା । ପ୍ରଜାମାନେ ଅଳ୍ପ ସୁଧରେ ପାଖରେ ଦରକାର ବେଳେ ଟଙ୍କା ପାଇଲେ । ମହାଜନଙ୍କ ଦ୍ୱାରକୁ ଦଶ ଥର ଦୌଡ଼ିବାକୁ ପଡ଼ିଲା ନାହିଁ । ସମିତି ମଧ୍ୟ କାହାରିକୁ ବୃଥା ଖରଚ କରିବାକୁ ଟଙ୍କା ଦିଏ ନାହିଁ । ଫଳରେ ଲୋକେ ପରସ୍ପରର ଖରଚ କରିବା ଗତିବିଧି ଦେଖନ୍ତି । ଫସଲ ଆମଦାନି ବେଳେ ନ ବିକି ଦର ବେଶୀ ହେଲାବେଳେ ବିକି ବେଶୀ ଲାଭବାନ୍ ହୁଅନ୍ତି । ସମିତିର ଲାଭ ଟଙ୍କାରୁ ଗାଁରେ ଶିକ୍ଷା ସ୍ୱାସ୍ଥ୍ୟଆଦିର ଉନ୍ନତିରେ ଖରଚ କରାଯାଏ ।

Digitized by srujanika@gmail.com

## ଭାରତର ଶାସନ ପ୍ରଣାଳୀ—

ପଞ୍ଚମ ଜର୍ଜ ବର୍ତ୍ତମାନ ଭାରତର ସମ୍ରାଟ । ସେ ଭାରତରେ ନିଜେ ରହି ରାଜତ୍ୱ କରନ୍ତି ନାହିଁ । ସେ ନିଜ ରାଜ୍ୟ ଇଂଲଣ୍ଡରେ ରହନ୍ତି । ଭାରତରେ କେବଳ ତାଙ୍କ କର୍ମଚାରୀ ରହି ଶାସନ କରନ୍ତି ।

ଇଂଲଣ୍ଡ, ୱେଲସ୍, ସ୍କଟଲାଣ୍ଡ ଓ ଆୟର୍ଲାଣ୍ଡର ଶାସନ ବୁଝିବାକୁ ଲଣ୍ଡନ ସହରରେ ଗୋଟିଏ ମହାସଭା ଅଛି । ତାକୁ ପାର୍ଲିମେଣ୍ଟ କହନ୍ତି । ତାହା ରାଜାଙ୍କ ପକ୍ଷରୁ ଦେଶର ଭଲମନ୍ଦ ବୁଝନ୍ତି, ଆଇନ କାନୁନ୍ ତିଆରି କରନ୍ତି । ପାର୍ଲିମେଣ୍ଟ ଆଇନ ଗଢି ସାରିଲେ ରାଜା ସେଥିରେ କେବଳ ସ୍ୱାକ୍ଷର କରନ୍ତି । ରାଜା ସ୍ୱାକ୍ଷର କରି ସାରିଲେ ତାହା ଆଇନ ହୋଇ ଚଳେ ।



ସମ୍ରାଟ୍ ପଞ୍ଚମ ଜର୍ଜ

ଭାରତ-ଶାସନ କିପରି ଚଳିବ, ତାହା ଏହି ପାର୍ଲିମେଣ୍ଟ ମଧ୍ୟ ବୁଝନ୍ତି । ଭାରତ ପାଇଁ ଜଣେ ମନ୍ତ୍ରୀ ଅଛନ୍ତି । ସେ ଭାରତରେ ନ ଥାଇ ବିଲାତରେ ଥାନ୍ତି । ସେ ଭାରତର ସବୁକଥା ପାର୍ଲିମେଣ୍ଟରେ ପକାନ୍ତି । ପାର୍ଲିମେଣ୍ଟର ନିର୍ଦ୍ଦେଶମତେ ଭାରତ ଶାସନ ଚଳେ ।

ସମ୍ରାଟ ପ୍ରତି ପାଞ୍ଚ ବର୍ଷ ପାଇଁ ଜଣେ ପ୍ରତିନିଧି ଭାରତ ଶାସନ କରିବାକୁ ପଠାନ୍ତି । ତାଙ୍କୁ ଭାଇସରୟ ବା ଗଭର୍ଣ୍ଣର ଜେନେରାଲ୍ କହନ୍ତି ।

Digitized by srujanika@gmail.com

ଭାରତର ସମୁଦାୟ କଥା ପାଇଁ ସେ ଦାୟୀ । ତାଙ୍କର ବର୍ଷକୁ ଦରମା ପ୍ରାୟ ଅଢ଼େଇ ଲକ୍ଷ ଟଙ୍କା । ତାଙ୍କ ତଳକୁ ପ୍ରତି ପ୍ରଦେଶରେ ଜଣେ ଲେଖାଏଁ ଲାଟ ଥାନ୍ତି । ସେ ପ୍ରଦେଶର ଶାସନ ପାଇଁ ଦାୟୀ । ପ୍ରତି ପ୍ରଦେଶକୁ ପୁଣି କେତେଗୁଡ଼ିଏ ବିଭାଗ କରାଯାଇଛି । ପ୍ରତି ବିଭାଗକୁ ଡିଭିଜନ କହନ୍ତି । କେତେକ ଡିଭିଜନରେ ଜଣେ ଜଣେ କମିସନର ଅଛନ୍ତି । କେତେଗୁଡ଼ିଏ ଜିଲ୍ଲା ନେଇ ଡିଭିଜନ ଗଠିତ । ପ୍ରତି ଜିଲ୍ଲାରେ ଜଣେ ମାଜିଷ୍ଟ୍ରେଟ୍ ଓ କଲେକ୍ଟର ଥାନ୍ତି । ସେ ଜିଲ୍ଲା ମଧ୍ୟରେ ଶାନ୍ତି ଶୃଂଖଳା ରଖନ୍ତି, ମାଲିମକଦ୍ଦମା ବୁଝନ୍ତି, ଜିଲ୍ଲାର ଲୋକଙ୍କର ଆପତ୍ତି ଅଭିଯୋଗ ଶୁଣନ୍ତି । ପ୍ରତି ଜିଲ୍ଲା କେତେଗୁଡ଼ିଏ ସବଡିଭିଜନରେ ବିଭକ୍ତ । ମାଜିଷ୍ଟ୍ରେଟଙ୍କୁ ସାହାଯ୍ୟ କରିବାକୁ ପ୍ରତି ସବ୍‌ଡିଭିଜନରେ ଜଣେ ଜଣେ ଡେପୁଟି ମାଜିଷ୍ଟ୍ରେଟ ଥାନ୍ତି । ତାଙ୍କୁ ସବ୍‌ଡିଭିଜନାଲ୍ ମାଜିଷ୍ଟ୍ରେଟ କହନ୍ତି । ସେ ତାଙ୍କ ସବ୍‌ଡିଭିଜନର ମାଲିମକଦ୍ଦମା ବୁଝନ୍ତି ।

ପୋଲିସ ଶାସନ—ପ୍ରତି ସବ୍‌ଡିଭିଜନରେ ଶାନ୍ତି ଶୃଂଖଳା ରଖିବା ପାଇଁ ଭିନ୍ନ ଭିନ୍ନ ସ୍ଥାନରେ କେତେଗୁଡ଼ିଏ ପୋଲିସ ଥାନା ଅଛି । ପ୍ରତି ଥାନାରେ ଜଣେ ଜଣେ ପୋଲିସ ସବ୍‌ଇନସ୍‌ପେକ୍‌ଟର ଥାନ୍ତି । ଜଣେ ବା ଦୁଇ ଜଣ ହେଡ୍‌କନ୍‌ଷ୍ଟେବଲ ଓ ଆଉ କେତେ ଜଣ କନ୍‌ଷ୍ଟେବଲ ଥାନ୍ତି । ଥାନା ଅଧୀନରେ ଥିବା ଗ୍ରାମମାନଙ୍କରେ ଚୋରି, ଡକାୟତି, ମାରପିଟି, ହଣାକଟା ହେଲେ ପୋଲିସ ସେ ସବୁ ତଦନ୍ତ କରି ସବ୍‌ଡିଭିଜନାଲ ମାଜିଷ୍ଟ୍ରେଟଙ୍କୁ ବା ମାଜିଷ୍ଟ୍ରେଟଙ୍କୁ ଜଣାନ୍ତି । ପ୍ରତି ଗାଁରେ ଜଣେ ଦୁଇଜଣ କରି ଚୌକିଦାର ଥାନ୍ତି । ଗାଁରେ ଚୋରି ଡକାୟତି ମାରପିଟି ହେଲେ ସେମାନେ ହଠାତ୍ ତାଙ୍କ ଉପର ହାକିମ ଦଫାଦାରଙ୍କୁ ଜଣାଇ ଥାନାରେ ଖବର ଦିଅନ୍ତି । ଚୌକି-ଦାରମାନେ ରାତିରେ ଗାଁରେ ପହରା ଦିଅନ୍ତି, ଜନ୍ମମୃତ୍ୟୁର ତାଲିକା ରଖନ୍ତି । ଥାନାର କାର୍ଯ୍ୟ ତଦନ୍ତ କରିବାକୁ ଜିଲ୍ଲା ଭିତରେ କେତେ ଜଣ ପୋଲିସ ଇନସ୍‌ପେକ୍‌ଟର ଥାନ୍ତି । ସମଗ୍ର ଜିଲ୍ଲା ପାଇଁ ଜଣେ ପ୍ରଧାନ ପୋଲିସ କର୍ମଚାରୀ ଥାନ୍ତି । ତାଙ୍କୁ ପୋଲିସ ସୁପରିଣ୍ଟେଣ୍ଡେଣ୍ଟ କହନ୍ତି । ତାଙ୍କୁ ସାହାଯ୍ୟ କରିବାକୁ ଆଉ ଜଣେ ବା ଦୁଇଜଣ ଡେପୁଟି ସୁପରିଣ୍ଟେଣ୍ଡେଣ୍ଟ ବା ଆସିଷ୍ଟାଣ୍ଟ ସୁପରିଣ୍ଟେଣ୍ଡେଣ୍ଟ

Digitized by srujanika@gmail.com

ଥାନ୍ତି । ପ୍ରତି ଜିଲ୍ଲାର ପୋଲିସ ସେ ଜିଲ୍ଲା ମାଜିଷ୍ଟ୍ରେଟଙ୍କ ଆଦେଶ ମାନି ଚଳନ୍ତି । ପ୍ରତି ପ୍ରଦେଶର ରାଜଧାନୀରେ ସମସ୍ତ ପୋଲିସ ବିଭାଗର ପ୍ରଧାନ ହାକିମ ଇନ୍‌ସପେକ୍ଟର ଜେନେରଲ ଥାନ୍ତି ।

## ଭାରତରେ କରଦ ରାଜ୍ୟ—

ହିମାଳୟ ପର୍ବତର ପାଦଦେଶରେ ଥିବା ନେପାଳ ଓ ଭୁଟାନ ରାଜ୍ୟ ସ୍ୱାଧୀନ । ଏମାନେ ଇଂରେଜମାନଙ୍କ ମିତ୍ରରାଜ୍ୟ । ଏହି ଦୁଇ ରାଜ୍ୟକୁ ଛାଡିଦେଲେ ଭାରତର ବାକୀ ସମସ୍ତ ରାଜ୍ୟ ଇଂରାଜ ସରକାରଙ୍କ ଅଧୀନ । ଇଂରେଜମାନେ ଏ ଦେଶକୁ ଆସିଲା ବେଳେ କେତେକ ରାଜା ସେମାନଙ୍କ ସଙ୍ଗେ ଲଢେଇ କଲେ । ଯେଉଁମାନେ ଲଢେଇରେ ହାରିଗଲେ, ସେମାନେ ରାଜ୍ୟ ହରାଇ ବସିଲେ । ଆଉ ଯେଉଁମାନେ ଇଂରେଜଙ୍କ ଶରଣ ପଶିଲେ, ସେମାନେ ଇଂରେଜଙ୍କ କ୍ଷମତା ମାନି ତାଙ୍କ ଅଧୀନରେ ନିଜ ନିଜ ରାଜ୍ୟ ବୁଝିଲେ । ସେ ସବୁ ରାଜ୍ୟକୁ କରଦ ରାଜ୍ୟ କହନ୍ତି । ଯେଉଁ ରାଜ୍ୟମାନ ଇଂରେଜମାନେ ଜିଣି ଆଣିଲେ, ସେ ସବୁ ଖାସ୍ ଦଖଲରେ ରହିଲା ।



Printed by B. K. Kar B. A. at the Saraswata Press, Cuttack—1937

Digitized by srujanika@gmail.com